ଏକାଙ୍କିକା-
ପ୍ରକାଶନୀ

# ଯୁଗେ ଯୁଗେ ଉତ୍କଳ



ନାଟ୍ୟାଚାର୍ଯ୍ୟ କାଳୀଚରଣ ପଟ୍ଟନାୟକ କବିଚନ୍ଦ୍ର :—



—ଯୁଗେ ଯୁଗେ ଉତ୍କଳ—

(୧) —ଇତିହାସ ଯେବେ ଥିଲା ମୂକ

ପ୍ରଥମ ପ୍ରକାଶ :—
ଫଗୁ ଦଶମୀ, ୧୩୭୨ ସାଲ

ପ୍ରକାଶକ :—
ଜ୍ଞାନବିକାଶ ମନ୍ଦିର
କଟକ - ୨

ମୁଦ୍ରଣ :—
ପରମାର୍ଥୀ ପ୍ରିଣ୍ଟିଂ ଓ୍ୟାର୍କସ୍‌
କଟକ—୧

ଟଙ୍କାଟିଏ

## —ସମର୍ପଣ—

କାଲ ବହେ—କଥା ରହେ । ଉତ୍କଳ ବିଶ୍ୱବିଦ୍ୟାଳୟକୁ ଇଉନିଭର୍‌ସିଟି କମିଶନ ଆସିଥାନ୍ତି, ଏଇ କେତେବର୍ଷ ତଳେ । ମାନନୀୟ ଡାକ୍ତର ସର୍ବପଲ୍ଲୀ ରାଧାକୃଷ୍ଣନ୍ (ଆଜି ସ୍ୱାଧୀନ ଭାରତର ଭାଇସ୍ ପ୍ରେସିଡେଣ୍ଟ) ଙ୍କ ସଙ୍ଗେ ଓଡ଼ିଶୀ-ସଙ୍ଗୀତ ଓ ନୃତ୍ୟ ସମ୍ବନ୍ଧେ ଆଲୋଚନାର ଟିକିଏ ସୁଯୋଗ ପାଇଥିଲି । ପାଶୋରି ପାରିନାହିଁ ତାଙ୍କର ଆଗ୍ରହ, ତାଙ୍କର ଅଗାଧ ପାଣ୍ଡିତ୍ୟ,—ଓଡ଼ିଶାର କଳା ସମ୍ବନ୍ଧେ ତାଙ୍କର ଆଗ୍ରହ ପୂର୍ଣ୍ଣ ବିବିଧ ଚତୁର-ପ୍ରଶ୍ନାବଳି ।

ସେଇ ଅପାଶୋରା ସନ୍ଧ୍ୟାର ମଧୁସ୍ମୃତି ମୋତେ ଆଜି 'ଯୁଗେ ଯୁଗେ ଉତ୍କଳ'ର ପ୍ରଥମାଂଶ ତାଙ୍କର କରରେ ସମର୍ପଣ କରିବାର ସୌଭାଗ୍ୟ ପ୍ରଦାନ କରୁଛି ।

ହେ ବିଦ୍ୱାନ୍ ! ଆପଣଙ୍କ ଜ୍ଞାନାଲୋକରେ ଭାରତ ସମୁଜ୍ଜ୍ୱଳିତ ହେଉ ।

ଜଗନ୍ନାଥ ବଲ୍ଲଭ
କଟକ
୧୯୫୫ ଫେବୃୟାରି

ଗୁଣମୁଗ୍ଧ
**କାଳୀଚରଣ ପଟ୍ଟନାୟକ**

# ଦି' ଧାଡ଼ି......

'ଯୁଗେ ଯୁଗେ ଉତ୍କଳ'—ଲେଖା କାହାର ବୋଲି ଖବର-କାଗଜମାନଙ୍କରେ ବହୁତ ତର୍କଯୁଦ୍ଧ ଲାଗିଲା । ମୁଁ ଏହା ଆଗରୁ ପହିଲେ 'ଫହ୍ନାଭୁଇଁ' ତା'ପରେ 'ପଥର-ଘର'—ଏଇଭଳି ଇତିହାସର ସରଞ୍ଜାମ ନେଇ ବାଢ଼ିଛି—ଲୋକେ ଜାଣନ୍ତି । ଏ ମଧ୍ୟ ସେଇ କଳ୍ପନା, ସେଇ ବ୍ୟବସ୍ଥାପନା, ସେଇ ରଚନା । ଭାଷା ଓ ଶୈଳୀ ପ୍ରତ୍ୟେକଙ୍କର ସ୍ୱତନ୍ତ୍ର—ଚିହ୍ନାରୀ ନବୀଶ ହିଁ ବୁଝିବେ ସେ କଥା ।

ନାନା ମହଲରୁ ଏ ବିଷୟରେ କେତେ ଚିଠି ପତ୍ର ପାଇଛି । ଘୁଞ୍ଚି ବସିଲେ ଧନ ଲୋଡ଼ା । ସେମାନଙ୍କ ସ୍ନେହ ଅପାଶୋରା ହୋଇ ରହିଲା ।

ବ୍ୟୋମକେଶ ତ୍ରିପାଠୀ ଓ ଜଗତକୁମାର କର ପ୍ରଭୃତି ଶ୍ରୀମାନ୍‌ମାନଙ୍କଠାରୁ ମୁଁ ବହୁତ ସାହାଯ୍ୟ ପାଇଛି । ବିଶେଷ କରି ବନ୍ଧୁ ନଟବର ମହାନ୍ତି ଇତିହାସ ଯୋଗାଇ, ପାଣ୍ଡୁଲିପିର ଲେଖାରେ ସାହାଯ୍ୟ ଦେଇ, ମୋତେ ଋଣୀ କରି ପକାଇଛନ୍ତି । କୃତଜ୍ଞ ମୁଁ ତାଙ୍କ ପାଶେ ।

ଆଉ ଧନ୍ୟବାଦ ଦିଏଁ ଏଭଳି ମଧୁମୁଖ ବନ୍ଧୁଙ୍କୁ, ଯାହାଙ୍କ ଯୋଗୁ ଭାବୀକାଳ ହାତରେ ଏ ଛପା ବହିଟି ଏତେବେଗେ ଟେକି ଦେଇ ପାରିଲି ।

**କାଳୀଚରଣ**

---

# —କଳ୍ପନା—

ଅନେକ ସମୟରେ ପିଲାଏ ଆସନ୍ତି ଅଭିନୟ ଲାଗି ନାଟିକା ମାଗି । ଏଇ ଏକାଙ୍କିକା ପ୍ରକାଶନର ପ୍ରେରଣା ଦେଲେ ସେଇମାନେ । ପରେ ପରେ ଗୋଟିଏ ଗୋଟିଏ ଯୁଗ ବା କାଳ ଧରି "ଯୁଗେ ଯୁଗେ ଉତ୍କଳ" ପାଞ୍ଚଅଙ୍କର ପାଞ୍ଚଟି ନାଟିକା ହେବ । କେହି ମନ କଲେ ପାଞ୍ଚଟିଯାକ ଅଙ୍କ ଏକାଥରେ ମଞ୍ଚସ୍ଥ କରି ପାରିବେ—ଏଇ ଅଭିପ୍ରାୟ ଅଛି । ତା ଛଡ଼ା ଆମ ଇତିହାସ, ପୁରାଣ ଓ କିମ୍ବଦନ୍ତୀ ଭିତରୁ ଶିକ୍ଷଣୀୟ ବିଷୟ ବାଛି ବାଛି ଶିଶୁ ମହଲରେ ଅଭିନୀତ ହେବା ଭଳି ଲେଖା ପ୍ରବର୍ତ୍ତାଇବାକୁ ମୋର କଳ୍ପନା ।

ଜ୍ଞାନବିକାଶ ମନ୍ଦିର ଏ ଗୁଡ଼ିକର ପ୍ରକାଶ ଭାର ନେଇଛନ୍ତି—ତାଙ୍କୁ ସାଧୁବାଦ ଜଣାଉଛି ।

**ନାଟ୍ୟକାର**

## —ପ୍ରଥମ—

**ଦୃଶ୍ୟ :—** (ବିନ୍ଧ୍ୟଗିରି ଏକ ପାର୍ଶ୍ୱରେ । ଅନ୍ୟ ପାର୍ଶ୍ୱରେ ବଙ୍ଗୋପସାଗରର କିୟଦଂଶ । ମଧ୍ୟସ୍ଥଳରେ ସମଭୂମି । ଗୋଟିଏ ପୁରାତନ ବଟବୃକ୍ଷ—ଯାହା କଳ୍ପବଟ ନାମରେ ପରିଚିତ । ମଞ୍ଚ ଅନ୍ଧାରିତ । ଅନ୍ତରାଳରୁ ପ୍ରାଗ୍ ଭାଷଣ ଶୁଣାଯାଉଥାଏ । )

ପାଶୋରି ଯୁଗର ଅପାଶୋରି କଥା
ଗୋଣ୍ଡ ମାଟି ଧୂଳି ରଖିଛୁ ମନେ
ଖୋଜି ନାହିଁ ମସି, ଲେଖନୀ, ପଥର
ଛବି ଛଇ ମାଧୁ ଛପିଛୁ ବନେ ।
ମୂକ କଳା ଶୀଳା ମୁଖର ଯେ ଦେଶେ
ପୁଅରି ମୂଳରେ ପରାଣ ଭରି
କ୍ଳୈବ୍ୟ ନ ବରୋଷି ତ୍ୟାଗୀ ଯୋଗେଶ୍ୱର,
ଜଗନ୍ନାଥ ଯହିଁ ଦେଇଛୁ ଧରି ।
ଶ୍ରୀଙ୍କରେ ଲେଖନୀ ଧରିଲେ ଶ୍ରୀଧର
ପଦ୍ମାବତୀ କର ପରଶ ଖାଇ
ସାରଳା ପ୍ରସାଦେ ନ ପଢ଼ି ପଣ୍ଡିତ
ଦାଣ୍ଡି ବୃତ୍ତେ ଗଲେ ଭାରତ ଗାଇ ।

ଏଇ ମାଟି ଛୁଇଁ ଚଣ୍ଡ ଖଡ଼ଗ
ପାଲଟିଲା ପରା ଧରମ ସାହା।
ପ୍ରଚଣ୍ଡ ମଣାଇଁ ଅତିଥିରେ ଆଣି
ଅପଣାର ମରଣେ ଯେ ମାଟି ମାଆ । —
ଏଇ ସେଇ ଦେଶ ଠେକି ଦେଇଛି ଯେ
ଧରମ ଯାଜକେ ଦେବତା କରି
ଜୀବନ ମୂହୁର୍ତ୍ତ ବଣିକ ସାଧୁତ
ଶିଖାଇଛି ଯାଇ ଦରିଆ ପାରି ।
ହାତୀ ଦେଖି ଯାର ଛାତି ଥରି ଥିଲା
ଅରାତି ଦେଉଛି ମଥାକୁ ପାତି
ଧନରେ, ମାନରେ, ଗୁଣରେ, ଜ୍ଞାନରେ
ଛତ୍ର ଫୁଟାଇଛି ଯେ ଦେଶ ଜାତି । —
ସବୁରି ପଛରେ ପରଦେଶୀ କରେ
ପରାଧୀନ ବୋଲି ହେଲା ଯେ ଗଣା;—
ଅଛି ଖାଲି ତାରି ସୁବାସ ମାତରି
ଉଡ଼ୁଛି କର୍ପୂର, ପଡ଼ିଛି କନା ।
ଆର୍ଯ୍ୟ ହେଉ ବା ଅନାର୍ଯ୍ୟ ହେଉ ସେ
ଶରଣ ବତ୍ସଳା ଦେଇଛୁ ଠାଇଁ
ଛାତି ଫୁଲି ଉଠେ ଉତ୍କଳ ଜନନୀ
ଅମଳ ଅତୀତ ଗୌରବ ଗାଇ ।

( ଭାଷଣ ମଧ୍ୟରେ କଳିଙ୍ଗ-ଲକ୍ଷ୍ମୀ ଗୋଟିଏ ପ୍ରଦୀପ ହସ୍ତରେ ଗିରି ଚୂଡ଼ାରୁ ଧୀରେ ଧୀରେ ଅବତରଣ କଲେ । ସେ କଳ୍ପବଟ

ମୂଳରେ ପ୍ରଦୀପ ସ୍ଥାପନ କରି ତିନିଗୋଟି ତାଳି ମାରିଲେ । ବୃକ୍ଷର ଗଣ୍ଡି ମଧ୍ୟରୁ ବାହାରି ଆସିଲେ କଳ୍ପ-ପ୍ରାଣ । ସେ ଅଳ୍ପ ହସି ଲକ୍ଷ୍ମୀଙ୍କୁ ପ୍ରଣାମ କଲେ । )

କଳ୍ପ-ପ୍ରାଣ—ଆଜ୍ଞା କର ଦେବି !

ଉତ୍କଳ-ଲକ୍ଷ୍ମୀ ! କଳ୍ପ-ପ୍ରାଣ—

ଯୁଗାନ୍ତର ମୂକ ସାକ୍ଷୀ
କି ନ ଜାଣ ତୁମ୍ଭେ ?
କଳିଙ୍ଗର ଇତିହାସେ ହେବ ସୂର୍ଯ୍ୟୋଦୟ—
ଅଧିକ ବିଳମ୍ବ ନାହିଁ ।
ଘେନ ଏ ପ୍ରଦୀପ
ଆଗନ୍ତୁକେ ମଣାଇଁ ଆଣିବ ପଥ ତୁମ୍ଭେ ।

କଳ୍ପ-ପ୍ରାଣ—ଯଥା ଆଜ୍ଞା ଦେବି ! (ମଥା ନୁଆଁଇଲେ)

( ଦେବୀ ତାଙ୍କ କରରେ ପ୍ରଦୀପ ଧରାଇ ଦେଇ ଗୋଟିଏ ଦିଗ ନିର୍ଦ୍ଦେଶ କଲେ । କଳ୍ପ-ପ୍ରାଣ ତେଣେ ଅଗ୍ରସର ହେଲେ । ଦେବୀ ପର୍ବତ ତଳର ପଥ ମଧ୍ୟରେ ପ୍ରସ୍ଥାନ କଲେ । ଅଳ୍ପକାଳ ପରେ କେତେ ଜଣ ସ୍ୱୟଂସେବକ ନର ନାରୀ ମଞ୍ଚ ପ୍ରବେଶ କଲେ । ସେମାନେ ପ୍ରକୃତିର ଶୋଭାରେ ଆନନ୍ଦ ପ୍ରକାଶ କରି ଯନ୍ତ୍ରଚାଳିତବତ୍ କଳ୍ପ-ପ୍ରାଣଙ୍କର ଅନୁଗାମୀ ହେଲେ ।)

## ଦୃଶ୍ୟ ପରିବର୍ତ୍ତନ

---

# —ଦ୍ୱିତୀୟ—

ଦୃଶ୍ୟ:—( ଧଳା ପରଦା ପଡ଼ିଗଲା—ପଛପଟରୁ ଅନେକ ଶବ ସାହାଯ୍ୟରେ ପଢ଼ିହେଲା—**ଇତିହାସ ଯେବେ ଥିଲା ମୂକ** ମଞ୍ଚର ବାହାର ପଟ ଅନ୍ଧକାର । ସେହି ଅନ୍ଧକାର ମଧ୍ୟରେ ପ୍ରବେଶ କଲେ 'କଳ୍ପ-ପ୍ରାଣ' । ତାଙ୍କର ପ୍ରବେଶ ପରେ ଅକ୍ଷର ଲିଭିଗଲା । ମଞ୍ଚ ଅଲୋକିତ ହେଲା । )

କଳ୍ପ-ପ୍ରାଣ—ଦୂର—

ଅତି ଦୂର ଅତୀତର କଥା:—
ଇତିବୃତ୍ତ ମୂକ ଥାଉ କାଳ କଳନାରେ,
ସେହି ସ୍ମରଣ ଅତୀତ ଯୁଗ:—
ଯେବେ ସୁଜଳା, ସୁଫଳା, ଶ୍ୟାମା, ଅତିଥିବତ୍ସଳା,
ମର-ସ୍ୱର୍ଗ ଭାରତ ଭୂଦେଶ
ଠାବ ଦେଲା ଅଙ୍କେ ତାର ସୁମେଖ୍ୟ ଗଣେ,
ପାଳି ପୋଷି ଆପଣା ସନ୍ତାନ ସର,—
ଅଙ୍କାରରେ ବାଢ଼ି ଦେଇ
ଅବାଧ ନିର୍ଝର ଜଳ,
ଅବାରିତ ଫଳ ଫୁଲ, ରସାଳ; ମଧୁର ।
ସ୍ନିଗ୍ଧ ଚନ୍ଦ୍ର, ମଳୟ ସଞ୍ଚାର,
ଗିରିବନ, ଶୋଭନ ପ୍ରାନ୍ତର
ନୟନ ରଞ୍ଜନ ଛବି ହେଇ ସୁମେଖ୍ୟ,

---

ଯୁଗେ ଯୁଗେ ଉତ୍କଳ

ସିନ୍ଧୁ ନଦ, ପଞ୍ଜାବ ପ୍ରଦେଶେ
ଶାନ୍ତ ସୁଖେ କରୁଥିଲେ ବାସ ।
ହରପ୍ପା, ମହେଞ୍ଜୋଦାର,
ଆଜି ମଧ୍ୟ ସହସ୍ର ସହସ୍ର ବର୍ଷ ପରେ
ଝଲକାଇ ବିଶ୍ୱର ନୟନ,
ମୂକ ମୁଖେ ଗା ଯଶୋ ଗାଥା,—
ଯେଉଁ କଳା ସଂସ୍କୃତିର ।
ଥୋକେ ତହୁଁ ଅଧିବାସୀ ରୂପେ
ପ୍ରଥମ ପ୍ରବେଶ କଲେ କଳିଙ୍ଗ ଭୂମିରେ ।
କ୍ରମ ବର୍ଦ୍ଧମାନ ଜାତି,
ସହଜାତ ମାନବ ମାନବ ପ୍ରକୃତି ଯେଣୁ,
ଲୋଡ଼ି ହେଲେ ବିସ୍ତୀର୍ଣ୍ଣ ଭୂଖଣ୍ଡ ।
କିନ୍ତୁ, ଭାରତର ଅର୍ଦ୍ଧ ପଥେ
ଅନ୍ତରାୟ ଅଚଳ ମହାନ ବିନ୍ଧ୍ୟ,
ଆର୍ଯ୍ୟାବର୍ତ୍ତ ଦାକ୍ଷିଣାତ୍ୟ କରି ଦ୍ୱିଖଣ୍ଡିତ ।

ଅନ୍ୟ ପାର୍ଶ୍ୱେ ଗରଜଇ
ଭୀମକାନ୍ତ ଲହରୀ ନଚାଇ
ଗଣ୍ଡ-ଗର୍ଭ ବଙ୍ଗୋପସାଗର ।
ପଥ କାହିଁ ? ପଥ କାହିଁ—
ଖୋଜି ହେଲେ ସୁମେରୀୟ ଦ୍ରାବିଡ଼ ସୁସଭ୍ୟ ।
ନିବେଶିଲେ ଅସି
ଧନକର-ପଥରୋଧୀ ମେଖଳିତ ବିନ୍ଧ୍ୟାଚଳ

ଦେଇଅଛୁ ମଥା ନୋଇଁ,
ଶୁଭ୍ର କଳା ଶବିନୋଦନୀ
ଉତ୍କଳ କମଳା ପୁର ଦ୍ୱାରେ;—
କଳିଙ୍ଗ ନାମରେ ଯାର ପୁରାଣ ପ୍ରଖ୍ୟାତ ।
ଏକ ପାର୍ଶ୍ୱେ ଘୂରୁଅଛି ସାଗର କରୁଛି ଦୂର ।
ଦୁହେଁ ମିଶି ସୁଗମ ଅଛନ୍ତି କର
କଳିଙ୍ଗର ପ୍ରବେଶ ତୋରଣ ।
ସ୍ନେହମୟୀ, କୃପାମୟୀ ଉତ୍କଳ-କମଳା
ସନ୍ତାନ ବାତ୍ସଲ୍ୟ କୋଳ କଲେ
ଦ୍ରାବିଡ଼ ଅତଥି ଗଣେ ।
ପ୍ରବେଶି ଏ ଦେଶେ
କବି କୌଶ୍ଚ କାନ୍ତ ଛବି ହେରି
ଜନନୀ ପଦ୍ମର ବନ୍ଦ —
ଗାଇଲେ ସେ ଅଗନ୍ତୁକେ
କଣ୍ଠ ଭରି ମୋଦେ :—
"ଜୟ ମା ଗୋ କଳିଙ୍ଗ ଜନନୀ"

(ମଞ୍ଚ ଅନ୍ଧାରିତ ହେଲ, ଅନ୍ତରାଳରୁ ବହୁ ନରନାରୀ କଣ୍ଠରୁ "ଜନନୀର ଜୟ" ଗାନ ଉଚ୍ଛୁଳି ଉଠିଲା । )

ଦୃଶ୍ୟ ପରିବର୍ତ୍ତନ

---

# —ତୃତୀୟ—

(ପୂର୍ବୋକ୍ତ "ଜୟ ମାଗୋ କଳିଙ୍ଗ ଜନନୀ" ଶବ୍ଦ ଓ ଶଙ୍ଖ ଧ୍ୱନି ସହିତ ଦୃଶ୍ୟ ପଟ ଉନ୍ମୋଚିତ ହେଲା)

**ଦୃଶ୍ୟ**—(ମନୋରମ ବନସ୍ଥଳୀ । ଅନୁଚ୍ଚ ଆସନରେ ଦେବୀ ଉତ୍କଳ ଲକ୍ଷ୍ମୀ ସମାସୀନା । ଧୂପ-ଧୂମରେ ମଞ୍ଚ ପରିପୂରିତ । ଧାନ-କେଣ୍ଡା, ବିବିଧ ଫଳ, ଅଖୁଗଛ, ସୋରିଷ ଫୁଲ ଇତ୍ୟାଦିରେ ଆସନର ଚତୁର୍ଦ୍ଦିଗ ସୁସଜ୍ଜିତ । ଦେବୀ ପଦ୍ମପୁଷ୍ପମାଳାଧାରିଣୀ । ସମ୍ମୁଖରେ ଆରତି ସାମଗ୍ରୀ । ଦୁଇଜଣ ଅଗନ୍ତୁକନାରୀ ଚାମର ବ୍ୟଜନରତା । ପୁରୁଷମାନଙ୍କ ମଧ୍ୟରୁ ଦୁଇଜଣ ଶଙ୍ଖ ବାଦନ କରୁଛନ୍ତି । ଅବିରତ ସନ୍ଧ୍ୟାରମ୍ଭକାଳୀନ ସଂଗୀତର ମୂର୍ଚ୍ଛନା ଭାସି ଆସୁଛି । ଜଣେ ଦ୍ରାବିଡ଼ ବେଶ ସଜ୍ଜିତା ଶ୍ୟାମା ଦେବୀଙ୍କର ସମ୍ମୁଖରେ ଆରତି ନୃତ୍ୟ ଆରମ୍ଭ କଲେ । )

ନୃତ୍ୟ ଶେଷରେ ସମୂହ କଣ୍ଠରୁ ଶୁଭିଲା—

## ଗୀତ

ଚିର ସୁନ୍ଦର ଶ୍ୟାମଳ କାନ୍ତି ଧରି
ଗିରି ନିର୍ଝର ନିର୍ମଳ ନୀର ଭରି
ଶିର ମଣ୍ଡିତ ବାସ ପ୍ରସୁନ ଝରି
ଚରଣେ ପ୍ରଣମାମି କଳିଙ୍ଗ ଧରି ॥ ୧ ॥

ଜନରଞ୍ଜକ ମଞ୍ଜୁ ନିକୁଞ୍ଜବନେ
ମନ ମୋହିତ ଭୃଙ୍ଗର ଗୁଞ୍ଜରଣେ
ଘନ କାନନ ଝଙ୍କୃତ ଷଡ଼ଜ ସ୍ୱନେ
ପ୍ରଣମାମି କଳିଙ୍ଗ ଧରା ଚରଣେ ॥ ୨ ॥

ଦୃଶ୍ୟ ପରିବର୍ତ୍ତନ

---

## —ଚତୁର୍ଥ—

ଦୃଶ୍ୟ :—( ଧଳା ପରଦା ପଡ଼ନ୍ତୁ—ପ୍ରବେଶ କଲେ କଳ୍ପ-ପ୍ରାଣ )

କଳ୍ପ-ପ୍ରାଣ—କାଳ ଗତ—
ଅଦମ ସଭ୍ୟତା ସ୍ଥଳେ,
ଦ୍ରାବିଡ଼ ସଂସ୍କୃତ କ୍ରମେ ଭରିଲା କଳିଙ୍ଗେ ।
ଠାବେ ଠାବେ ବଶ କରି
ଅଦମବାସୀରେ,
ଅଧିକାରୀ ହେଲେ ଦେଶେ
ସଭ୍ୟ ସୁମେରୀୟ ।
ଅଳ୍ପକରେ କଳ୍ପକଥା ଗଳ୍ପ ସବୁ ଲାଗେ,—
ସୁକାନ୍ତ ପ୍ରସାଦେ ଯେବେ,

ହିମାଚଳ ଗହ୍ୱର ବିରଜି
କଳିଙ୍ଗେ ବିଜୟୀ ଗଙ୍ଗାବଂଶ;—
ଯାହାର କରୁଣା ବଳେ
ପୁଣି ଚିର-ଗରବିଣୀ କଳିଙ୍ଗ ମେଦିନୀ
ଧନ ଧାନ୍ୟେ ହେଲା ପରିପୂର୍ଣ୍ଣା ।
ସ୍ୱପ୍ନ ଛବି ଧରି
ସେହି ସୁଦୂର ଅତୀତ ମଧୁସ୍ମୃତି
ଆଜି ମଧ୍ୟ ଜାଗି ଉଠେ ମନେ—
ଝଂକାରିତ ହୁଏ କାନେ କାନେ
ଜଳଦ ଗମ୍ଭୀର ସ୍ୱରେ
ସାଧକ ସୁକାନ୍ତ କଣ୍ଠେ ସୁରଧୁନୀ ସ୍ତବ :—

(ଦୃଶ୍ୟ ପରିବର୍ତ୍ତନ)

---

## —ପ୍ରଥମ—

ସୁକାନ୍ତ—ଗଙ୍ଗା

ଦୃଶ୍ୟ—(ଉଚ୍ଚ ପର୍ବତମାଳା । ସୂର୍ଯ୍ୟ ପାହାଡ଼ର ଅପର ପାର୍ଶ୍ୱରେ ଅଛନ୍ତି, କିନ୍ତୁ ତେଜ ଦେଖା ଯାଉଛି । ପାହାଡ଼ ତଳରେ ବିଶେଷ ସୂର୍ଯ୍ୟାଲୋକ ପଡ଼ୁନାହିଁ । ପ୍ରଭାତୀ ପକ୍ଷୀ ଗାଉଛନ୍ତି । ଅବହିରେ ପ୍ରଭାତୀ ରାଗିଣୀର ମୂର୍ଚ୍ଛନା ଶୁଣା ଯାଉଅଛି । ଦୂରରେ ଦେବ—

ମନ୍ଦରର ଅରଢ-ବାଦ୍ୟର କ୍ଷୀଣ ଅଭାସ । ପ୍ରବାହିତା ଗଙ୍ଗା । ନିମ୍ନ ଦେଶରେ ନଦୀ ଗର୍ଭରେ ଅବତୀର୍ଣ୍ଣା ହେଲେ ମକର ବାହନରେ ଗଙ୍ଗାଦେବୀ । ସମ୍ମୁଖରେ ବ୍ରାହ୍ମଣ ସୁକାନ୍ତ । ସେ ଗୌରବର୍ଣ୍ଣ । ପରିଧାନ କଷାୟ । ଗଳାରେ ରୁଦ୍ରାକ୍ଷମାଳା । ନିମୀଳିତ ନୟନରେ ସେ ସ୍ତୋତ୍ର ପାଠ କରୁଥିଲେ, ଗଙ୍ଗାଦେବୀଙ୍କର; ନତ ଜାନୁ ହୋଇ । )

ସୁକାନ୍ତ—ନମାମି ଦେବୀଂ ପାପଘ୍ନୀ ଜାହ୍ନବୀଂ ଭକ୍ତବତ୍ସଳାଂ
ତ୍ରୈଲୋକ୍ୟ ପାବନୀଂ ତ୍ୱଂହି ରକ୍ଷ ମାଂ ଶରଣାଗତମ୍ ।

ସର୍ବପାପ କ୍ଷୟକାରୀ ସର୍ବ ଲୋକାର୍ତ୍ତି ନାଶିନୀ
ପୂଜ୍ୟା ତ୍ୱଂ ସର୍ବଦେବୈସ୍ତୁ ତ୍ୱାଂନତୋସ୍ମି ପୁନଃ ପୁନଃ ।
ଗିରିଜାନାଥ ଶିରସି ସ୍ଥିତ୍ୱା ତ୍ୱାଂ ଜନ ପାବନୀଂ
ତ୍ୱାଂ ନତୋସ୍ମି ସ୍ଥିତାଂ ଗଙ୍ଗା ପିତାମହ କମଣ୍ଡଳୌ ।
ବିଷ୍ଣୋର୍ପାଦାବ୍ଜଜାଂ ତ୍ୱଂହି ଭଗୀରଥ ବରପ୍ରଦାଂ
ପ୍ରଣତୋସ୍ମି ମହାଭାଗାଂ ପାବନୀଂ ସଗରାତ୍ମଜାମ୍ ।

( ପ୍ରଣାମ କଲେ )

ଗଙ୍ଗା—(ସନ୍ତୋଷ ହୋଇ ଆଶୀର୍ବାଦ କରି ସ୍ମିତ ମୁଖରେ କହିଲେ)
ବତ୍ସ । ତୃପ୍ତ ହେଲି ପୂଜାରେ ତୋହର ।
ସାର୍ଥକ ତପସ୍ୟା ।
ହିମାଚଳ ଗର୍ଭୁ ଝରି ମୁହିଁ
ଯିବି ବିନ୍ଧ୍ୟାଚଳେ;

ତହୁଁ ପୂର୍ବ ଅଭିମୁଖେ କରି ଯାତ୍ରା—
ପୂର୍ବ ସାଗର ତରଙ୍ଗେ
ତନୁ ଧୋଇବ ଡାଳି ।
ପୁରାଇବ ବତ୍ସ ତୋର ମନର ବାସନା ।
ସୁକାନ୍ତ—କୋଟି ପ୍ରଣତି ଦାସର
ଘେନ ମା' ଚରଣେ,
ଭଗବତୀ ସୁରେଶ୍ୱରୀ ଗଙ୍ଗେ !
ଯେବେ ଗୋ କରୁଣାମୟି !
ହେଲ ଅନୁକମ୍ପା ସନ୍ତାନରେ
ଏତିକି ମିନତି ମୋର ଘେନ ସୁରେଶ୍ୱରି !
ପୁତ କର କଳିଙ୍ଗ ମେଦିନୀ;—
ଜନ୍ମଭୂମି ମୋର ।
ଯୁଗେ ଯୁଗେ ରହୁ କୀର୍ତ୍ତି ଗାଥା
ଜାହ୍ନବୀ କରୁଣାମୟୀ ବିଜୟ କଳିଙ୍ଗେ ।
ଗଙ୍ଗା—ପ୍ରୀତ ହେଲି ବତ୍ସ, ଅନ୍ତନୟେ ।
ଚିତ୍ରୋତ୍ପଳା ନାମେ ମୁହିଁ
କଳିଙ୍ଗ ଭୂମିରେ ହେବି ଅବତୀର୍ଣ୍ଣା ।
ସହଚରୀ ଗିରି ନଦୀ
ନିର୍ଝର ସଙ୍ଗିନୀ,—
ଗାଇ କୁଳୁ ଗୀତ ତାଳେ ତାଳେ,
ଚଉକତି ନାଚୁଥିବେ ମୋର, ଉଦ୍ଦାମ ଉଲ୍ଲାସେ;
ଥଭ ମୁହିଁ,

ଶରଦ ଶୀତଳ ଇନ୍ଦୁ ନିନ୍ଦ-ସ୍ୱଚ୍ଛ ନୀରେ
ହେବ ବହୁମୁଖୀ;—
ଜନପଦେ, କାନନ କନ୍ଦରେ
ବିଚରିବ ଅବାଧ ଅହ୍ଲାଦେ,
ଶ୍ୟାମାୟିତ କରି ସାରା ଧରା ।
ଦୀର୍ଘାୟିତ, ଶୁଭ୍ର କଳେବର
ହେରିବେ କଳିଙ୍ଗ ଜନ ଅନନ୍ଦ ବିସ୍ମୟେ,
ମହାନଦୀ ବୋଲିବେ ସକଳେ ।
ଗଙ୍ଗା ନାମ ମୋର ଦେଶେ ଦେଶେ
ଖ୍ୟାତ ହେବ ଚିତ୍ରୋତ୍ପଳା ରୂପେ ।
ଅବଗାହି ନୀଳ ନୀରେ ମୋର
ଦୂର ହେବ ମାନବର ଅଶେଷ କଳୁଷ
ଯାଅ ବତ୍ସ ! ସାର୍ଥକ ସାଧନା ତୋର ।
ଚିନ୍ତା ତେଜ ମନ୍ତୁ ।
ସୁକାନ୍ତିର ତପ ଫଳେ
ଗଙ୍ଗା ଅଭିଯାନ
ଯୁଗେ ଯୁଗେ ରଟିବ ଜଗତ ।
କଳିଯୁଗେ ଗଙ୍ଗାଧାର
ବୋଲାଇବ ନଦୀ ଚିତ୍ରୋତ୍ପଳା ।

ସୁକାନ୍ତ—(ପ୍ରଣାମ କରି)
ନମସ୍ତେ ଚରଣେ କୃପାମୟୀ
ଧନ୍ୟ ହେଲି ଅନୁଗ୍ରହେ ଦେବି ।

ମହାଭାଗ୍ୟ,—ମହାଭାଗ୍ୟ ମୋର
ପୂତ ହେବ କଳିଙ୍ଗ ଭୂଦେଶ
ଚରଣ ପରଶେ ତବ ।
ଚରାଚରେ ପ୍ରସରିବ ଜାହ୍ନବୀ ମହିମା ।
ସ୍ନାନ କରି, ପାନ କରି ପବିତ୍ର ସଲିଳ
ନରନାରୀ ହେବେ ପାପୀତାପୀ ।
କୋଟି କଣ୍ଠ ଗାଇବେ ପୁଲକେ
ଜନନୀର ଜୟ ଜୟ ଗୀତ :—

କଳିଙ୍ଗ ଶତୋଦ୍ଧୃତା ଗଙ୍ଗା ।
କଳିଙ୍ଗ ଶତୋଦ୍ଧୃତା ଗଙ୍ଗା ।।
କଳିଙ୍ଗ ଶତୋଦ୍ଧୃତା ଗଙ୍ଗା ।।।
ପ୍ରଣାମ ଜନନୀ ।

(ଦୃଶ୍ୟ ପରିବର୍ତ୍ତନ)



## —ଷଷ୍ଠ—

ଦୃଶ୍ୟ—(ଧଳା ପରଦା ପଡ଼ିଗଲା—କଲ୍ପ-ପ୍ରାଣ ପ୍ରବେଶ)

କଲ୍ପ-ପ୍ରାଣ—

ଚିରଦିନ ସମାନ ଯାଏନା ।
ଦୂର—ବହୁଦୂର ଦେଶ—
ଛାଡ଼ିଆସି ଆସିଛନ୍ତି,
ଭାରତର ଉତ୍ତର ପଶ୍ଚିମ ପଥେ
ପ୍ରବେଶିଲେ ନବାଗତ ସୁସଭ୍ୟ ମାନବ ।
ଆର୍ଯ୍ୟ ନାମେ ହେଲେ ପରିଚିତ ।

(ନେପଥ୍ୟେ ବେଦଧ୍ୱନି)

ଉତ୍ତର ଭାରତ ରଙ୍ଗ ଫୁଟିଲା ନବୀନ ।
ଜନାଦାଲି ସଂଘର୍ଷ ଲାଗିଲା କ୍ରମେ
କଳିଙ୍ଗର ପ୍ରବେଶ ତୋରଣେ ।
ପ୍ରମାଦ ଗଣିଲେ ଦ୍ରାବିଡ଼ୀୟେ ।
ଯୁଗ ଯୁଗ ଧରି ରଣେ ମାତିଲେ ଉଭୟେ ।
ହିନ୍ଦୁକୁଶଠାରୁ ଗଙ୍ଗା ଅବଧି ସଭ୍ୟେ ।
କାଳେ ପୁଣି, ଦ୍ରାବିଡ଼େ ସ୍ୱୀକାର କଲେ ଆର୍ଯ୍ୟର ବଶ୍ୟତା ।
ଦୁଇପକ୍ଷ ହେଲେ ମିଶାମିଶି ।

---

ବିବାହ ବନ୍ଧନେ ବନ୍ଧ ହୋଇଲେ ଉଭୟେ ।
ଏକର ଦେବତା ପୂଜ୍ୟ ହେଲେ ଅନ୍ୟ ପୁରେ ।
କଳା, କୃଷ୍ଟି, ସଂସ୍କୃତି ଏକର
ଅନ୍ୟ ପକ୍ଷେ ଲଭିଲା ଆଦର ।
ଖଣ୍ଡ ରାଜ୍ୟ ସ୍ଥାପି ଆର୍ଯ୍ୟେ ଶାସିଲେ ଭୂଖଣ୍ଡ ।
ମେଖଳାତ ବିନ୍ଧ୍ୟଗିରି କନ୍ଧ,
ଆର୍ଯ୍ୟାବର୍ତ୍ତ, ଦକ୍ଷିଣାପଥ ନାମରେ
ଭାରତ ସଭ୍ୟତା ସଦା ରହିଲା ବିଭକ୍ତ ।
ବେନି ସଭ୍ୟତାର ଧାରା
ଅବାଧେ ମିଳିତ ହେଲା
ଏହି କଳିଙ୍ଗ ଭୂଦେଶେ,—
ଯେଣୁ କଳିଙ୍ଗର ଅଧିଷ୍ଠାନ
ଭାରତେ ବିଚିତ୍ର ।
ସୁଗମ ପ୍ରବେଶ ପଥ
କଳିଙ୍ଗ ତୋରଣ—
ଏକମାତ୍ର ଯୋଗସୂତ୍ର
ଆର୍ଯ୍ୟାବର୍ତ୍ତ ଦକ୍ଷିଣା ପଥର ।
ତେଣୁ ଆର୍ଯ୍ୟ ଦ୍ରାବିଡ଼ ସଭ୍ୟତା
ଆଲିଙ୍ଗନ କଲେ ପରସ୍ପରେ
କଳିଙ୍ଗେ କେବଳ ।
ଫଳେ ତାର—
ସୁମାତ୍ରା, ସୁଦୂର ଯାଭା, ବାଲି, ବୋର୍ଣ୍ଣିଓରେ
ବୋଇତ ଭସାଇ ନୀଳ ସାଗର ଉରସେ

କଳିଙ୍ଗ ସାଧବ କଲେ ବାଣିଜ୍ୟ ବିସ୍ତାର ।
କଳିଙ୍ଗ ସଭ୍ୟତା, ପ୍ରଭୁତ୍ୱ ଲଭିଲା ଦେଶେ ଦେଶେ —
ଅବଧି ଯା ମହାକାଳ
ପାର ନାହିଁ ଧ୍ୱଂସ ମୁଖ ପୋଛୁ ।
ଗଢ଼ି ହେଲା ପୋତାଶ୍ରୟ ବନ୍ଦୁ—
ଚରିତ୍ର, କଳିଙ୍ଗ ଅଭ ତାମ୍ରଲିପ୍ତି ଆଦ;—
ଯାହା ସବୁ କଳିଙ୍ଗ କରନ୍ତି ବୋଲି
ରଚିଛନ୍ତି ଚୈନିକ ଭ୍ରାମକ ।
କଳିଙ୍ଗର ଧର୍ମ, କର୍ମ, ସଭ୍ୟତା, ସଂସ୍କୃତି
ଏକା ଭାରତରେ ନୁହେଁ
ଦୂର ଦୂରାନ୍ତରେ ହେଲା ଅଭିବନ୍ଦନୀୟ ।
ଏକଦା ବିଜୟ ନାମେ, କଳିଙ୍ଗର ରାଜପୁତ୍ର
ବୌଦ୍ଧ ଜାତକ ପ୍ରମାଣେ—
ଯକ୍ଷ ରାଜ କରି, ଛନ୍ନ କରି ସିଂହଳର ରାଜ ସିଂହାସନ
ଉଡ଼ାଇଲେ ଜୟ ବୈଜୟନ୍ତୀ—
ବୁଦ୍ଧକାଳ ଅନ୍ତେ ।
ସେହିକାଳ
ଧର୍ମ ଧ୍ୱଜା ଉଡ଼ାଇ କଳିଙ୍ଗେ
ମହାରାଜ ଇନ୍ଦ୍ରଦ୍ୟୁମ୍ନ,
କୃଷ୍ଣଦନ୍ତା ଜାରି ବଂଶଧର—
ବିଶ୍ୱାବସୁ ଶବର ପୂଜିତ—
ଶ୍ରୀ ନୀଳମାଧବେ ଆଣି

ପ୍ରତିଷ୍ଠିତ କଲେ ନୀଳାଚଳେ ।
ଛଳେ ବିଦ୍ୟାପତି ନାମେ ବ୍ରାହ୍ମଣ ପଣ୍ଡିତ
ହରି ନେଲେ ଶବର ଦେବତା ।
ହାହାକାର ପଡ଼ିଗଲା ଶବର ପଲ୍ଲୀରେ ।

( ଦୃଶ୍ୟ ପରିବର୍ତ୍ତନ )

---

## ୨ୟ ଦୃଶ୍ୟ

ନୀଳମାଧବଙ୍କ ଗହ୍ୱର ସମ୍ମୁଖ—(ଘନବନ—ଦେଖାଯାଉଛି କେବଳ ଗୁହାର ମୁଖ—ଅଳ୍ପ ଆଲୋକିତ)

—"ନାଁ, ନାଁ, ନାଁ ।"—

(ଅନ୍ତରାଳରୁ ଏହି ଶବ୍ଦ ସହିତ ଦୌଡ଼ି ଆସିଛି ଶବର ରାଜ ବିଶ୍ୱାବସୁର କନ୍ୟା 'ଲଳିତା' । ତାର ବେଶ ମଳିନ—ଆଖି ଲୁହ ଭରା—ମୁକୁଳା ବେଣୀ—ଅତି ବିବ୍ରତ ସେ । ଦୌଡ଼ି ଆସି ଗୁହା ଆଗରେ ପଡ଼ିଗଲା)

ଲଳିତା—ମୁଁ କି ଅପରାଧ କଲି ? କହ, ତୁମେ କହ ଦେବତା ।

( ନେପଥ୍ୟରୁ—ଲଳିତା । ଲଳିତା । )

ଲଳିତା—କାହିଁକି ? ମୋ ଦୋଷ ପାଇଁ ମୋତେ ଦଣ୍ଡ ଦେଲ ନାହିଁ । ତୁମେ କାହିଁକି ଚାଲିଗଲ ? ତୁମେ ତ ଜାଣ—ତୁମକୁ ଭୋଗ ନ ଦେଇ ବାପା ମୋର ପାଣି ଟୋପାଏ

ହେଲେ ପିଏ ନାହିଁ । ତୁମେ ଗଲା ଦିନରୁ ସେ ଉପାସ ରହିଛନ୍ତି । କି ଅପରାଧ ଆମର ?

ବିଦ୍ୟାପତି—(ବେଗେ ଆସିଲେ—ବଡ଼ ଅଧୀର ସେ—ଲଳିତାର ପଛଆଡ଼େ ଠିଆ ହୋଇ) ଅପରାଧ ନୁହେଁ ଲଳିତା । ତୁମେ ଜଗତର ଉପକାର କରିଚ ।

ଲଳିତା—ଅବିଶ୍ୱାସୀ, ବିଶ୍ୱାସରେ ବିଷ ଦେଇଚ ତୁମେ । ତୁମେ ଯାଅ, ତୁମେ ଯାଅ । ମୁଁ ଭୁଲ୍ କରିଛନ୍ତି । ବାପ ମୋର ତ ନ ଖାଇ ନ ପିଇ ପାଗଳ ହୋଇ ବୁଲୁଚି ଆଉ ମୁଁ ଏଇଠି,—ଏଇ ଗୁହା ମୁହଁରେ—ଶୁଖି ଶୁଖି ମରିବି । ତୁମେ ଯାଅ, ଚାଲି ଯାଅ । ଦେଖିବି ଆମ ଦେବତା ଆମ ଡାକ ଶୁଣିବେ କି ନାହିଁ ।

ବିଦ୍ୟାପତି—(ଲଳିତାର ହାତ ଧରି) ଉଠ ଲଳିତା । କଥା ଶୁଣ । ତୁମ ଦେବତା କି ତୁମକୁ ଛାଡ଼ି ରହି ପାରନ୍ତି ? ସେ ମୋତେ ପଠାଇଛନ୍ତି ତୁମ ପାଖକୁ । ଉଠ, ଶୁଣ ।

ଲଳିତା—(ହାତ ଛଡ଼ାଇ) ନା, ନା, ଛୁଅଁ ନା ମୋତେ ତୁମେ । (ହଠାତ୍ ବିଶ୍ୱାବସୁ ଓ କେତେ ଜଣ ଅନୁଚର ଅସିଲେ । ସମସ୍ତଙ୍କ ହାତରେ ଧନୁଶର, କାନ୍ଧରେ ଫାର୍ଶା । ବିଶ୍ୱାବସୁ ସଜୋରେ ବିଦ୍ୟାପତିକୁ ଟାଣିନେଲେ । ଲଳିତା ଉଠି ପଡ଼ିଲା)

ବିଶ୍ୱାବସୁ—(କ୍ରୋଧରେ) ତୁ । ପୁଣି ତୁ ଅସିଚୁ । ଅବିଶ୍ୱାସୀ ଖଣ୍ଟ । ଏଥର ଆଉ କଅଣ ନେବୁ ? ନେ, ନେ, ବାକି ମୋର ଯାହା ଅଛି, ନେ । (ମୁଣ୍ଡ ନୁଆଇଁ ଦେଲେ । ଫାର୍ଶାରେ ନିଜ ମୁଣ୍ଡ କାଟି ଦେବାକୁ ଉଦ୍ୟତ ହେଲେ)

ଲଳିତା—(ଦୌଡ଼ିଆସି ଫାର୍ଶା ଧରି ପକାଇ) ବାପା !

(ପ୍ରବେଶ କଲେ ଇନ୍ଦ୍ରଦ୍ୟୁମ୍ନ—ସାଧାରଣ ବେଶରେ ସଙ୍ଗରେ କେତେକ ଅନୁଚର)

ଇନ୍ଦ୍ରଦ୍ୟୁମ୍ନ—ବିଶ୍ୱାବସୁ । (ହାତଧରି ପକାଇଲେ । ଲଳିତା ଘୁଞ୍ଚିଗଲା)

ବିଶ୍ୱାବସୁ—ତୁ ପୁଣି କିଏ ?

ଇନ୍ଦ୍ରଦ୍ୟୁମ୍ନ—ମୁଁ ଇନ୍ଦ୍ରଦ୍ୟୁମ୍ନ । ତୁମର ବନ୍ଧୁ ।

ବିଶ୍ୱାବସୁ—(ହାତ ଛାଡ଼ି ଘୁଞ୍ଚିଗଲା । ଗୋଡ଼ଠାରୁ ମୁଣ୍ଡଯାଏ ଚାହିଁଲା) ଓ, ତୁ । ସପନ ତେବେ ସତ । ଠାକୁର ମୋତେ ସପନେଇଛି—ତୁ ସେଇ ରଜା । ସବୁ ତ ମୋର ନେଇ ସାରିଚୁ । ଅଜ କାହିଁକି ଅସିଛୁ ରଜା !

ଇନ୍ଦ୍ରଦ୍ୟୁମ୍ନ—କିଛି ନେଇ ନାହିଁ ବିଶ୍ୱାବସୁ । ନେଇ ନାହିଁ କିଛି—ନେବାକୁ ଅସିଛି । ଜଗନ୍ନାଥ-ଜଗତର ନାଥ । ସେ ଜଗତକୁ ଦର୍ଶନ ଦେବେ । ଏ କୀର୍ତ୍ତି ତୁମର—ମୋର ନୁହେଁ । ତୁମେ ତାଙ୍କର ପରମ ଭକ୍ତ । ସେ ତମକୁ ଖୋଜୁଛନ୍ତି । ତୁମେ ଗୁରୁ । ପ୍ରତିମା ନେଇଛି, ପ୍ରାଣ ତ ନେଇ ନାହିଁ । ଏଥର ସେଇ ପ୍ରାଣ—ତୁମକୁ—ନେବାକୁ ଅସିଛି ।

ବିଶ୍ୱାବସୁ—(ତଟସ୍ଥହୋଇ) ଲଳିତା ! ଏ ରଜା କଅଣ କହୁଚ ?

ଲଳିତା—ନାଁ, ନାଁ, ଅମେ ଏଇଠି ଦେବତା ନାଆଁରେ ମରିବୁଁ । ତୁମେମାନେ ସଭ୍ୟ—ଶୁଣିଛି ଖଣ୍ଡାକୁ ତୁମେ ସୁନା ଖୋଳରେ ପୂରାଇ ରଖ । ଅମେ ଯିବୁ ନାହିଁ । ଏ ଗୁହା ଦୁଆର ଛାଡ଼ି ଅମେ ଟିକିଏ କୋଉଠିକି ଘୁଞ୍ଚିବୁ ନାହିଁ । (ବାପକୁ ଟାଣିଲା)

ରଜା—ଲଳିତା, ତୁମେ ଦେଖ । ତୁମ ଦେବତା ତୁମର ଅଛନ୍ତି । ସେ ବାଙ୍କୀ ମୁହାଣ ସମୁଦ୍ର କୂଳରୁ ଆଜ ଫେଇ ଘୁଞ୍ଚୁ ନାହାନ୍ତି । ତୁମେ ଦୁହେଁ ନ ଗଲେ ସେ ଦେଉଳକୁ ଫିରିବେ ନାହିଁ । ଦେବତା ଅଣିଆ ଅପିଅ ଅଛନ୍ତି । ତୁମେ ଗଲେ ତାଙ୍କୁ ଖୁଆଇବ ଲଳିତା ।

ବିଶ୍ୱାବସୁ—(ଲଳିତା ପାଖରୁ ରାଜାଙ୍କ ପାଖକୁ ଶୀଘ୍ର ଯାଇ) ଏଁ ? ଦେବତା ମୋର ଖାଇ ନାହାନ୍ତି । ସତେ ତ । କିଏ ତା କଥା ବୁଝିବ ? କିଏ ତାକୁ ଗାଧୋଇ ଦେବ ? କିଏ ଆଜ ତାକୁ ଖୁଆଇବ ? (ମୁଣ୍ଡ ଚିପି ଧରି କାନ୍ଦ କାନ୍ଦ ହୋଇ) ଓଃ । ରଜା ! ତୁ କଅଣ କଲୁ ? ଗୋସେଇଁ ! ଅଣ୍ଟିରେ ପଣି ଭଣ୍ଡି ଭାଙ୍ଗି ଦେଲୁ ମୋର । ଦେବତା ମୋର ଉପାସ ଅଛି । ଓ ହୋ ହୋ ।

ଇନ୍ଦ୍ରଦ୍ୟୁମ୍ନ—ଅଧୀର ହୁଅ ନାହିଁ ବିଶ୍ୱାବସୁ । ତୁମେ ଚାଲ । ଲଳିତା ତୁମର ଦୁହିତା—ବିଦ୍ୟାପତି ତାର ପତି । ଏଇ ଦୁହିତା ପତି ତୁମ ଦେବତାର ପୂଜା କରିବେ । ତୁମେ ତମ ଦେବତାଙ୍କୁ ଖୁଆଇବ । ତୁମେ ନ ଗଲେ······

ବିଶ୍ୱାବସୁ—ନା, ମୁଁ ଜାଣେ ରେ ରଜା । ମୋ ଦେବତା ଏକା ମୋର ହାତରେ ଖାଏ । ମୁଁ ନ ଦେଲେ ସେ ଖାଇବ ନାହିଁ । ଚାଲ । ସେ ମତେ ଡାକୁଛି । ସେ ଖାଇ ନାହିଁ । ଚାଲ ରଜା । ଚାଲ ଲଳିତା । ଆ ଗୋସେଇଁ······ ।

(ଉହୁ କହୁ ରାଜାଙ୍କ ଭିଡ଼ି ଭିଡ଼ି ନେଇ ଚାଲିଗଲା)

(ଦୃଶ୍ୟ ପରିବର୍ତ୍ତନ)

---

# ୮ମ ଦୃଶ୍ୟ

କଳ୍ପ-ପ୍ରାଣ—(ପ୍ରବେଶ କଲେ)

ଦିନ ପରେ ରାତି—ଅନେକ ଅନ୍ଧାର ଆସେ ଯାଏ ।
ଚିର ସୁଖ ଶାନ୍ତି ନୁହେ ବିଧିର ନିର୍ବନ୍ଧ ।
କଳିଙ୍ଗର ଭାଗ୍ୟ ନୁହେ ସୃଷ୍ଟିରୁ ଅପର ।
ଶୌର୍ଯ୍ୟ, ବୀର୍ଯ୍ୟ, ଗୌରବ, ବିଭବ ଘେନି
ସହସ୍ର ବରଷକାଳ ଗର୍ବୋନ୍ନତ ଶିର ଟେକି
ପୁରାଣ ପ୍ରସିଦ୍ଧ ଦ୍ୱାତ୍ରିଂଶତ ରାଜପାଟ,
ଏକ ପରେ ଆନ—
ମଣ୍ଡିଥିଲେ କଳିଙ୍ଗର ଏକଛତ୍ର ରାଜ ସିଂହାସନ ।
ଉର୍ଜ୍ଜସ୍ୱଳ ଏହି ବଂଶଧାର—ଅସ୍ତମିତ ହେଲେ,
ମଗଧ ସମ୍ରାଟ ମହାପଦ୍ମ
ଆରମ୍ଭିଲେ ଭାରତରେ ଦିଗ୍‌ବିଜୟ ଯାତ୍ରା ।
ହାତି ଗୁମ୍ଫା ପ୍ରସ୍ତର ଖୋଦନ —
ଯୁଗ ଯୁଗାନ୍ତର ଲେଖ ଘେନି
ଗାଏ ଆଜ କଳିଙ୍ଗର ସଭ୍ୟତା ପ୍ରଶସ୍ତି ।
ମାଗଧୀୟ ମୌର୍ଯ୍ୟ କୁଳ ଦିବାକର
ଚନ୍ଦ୍ରଗୁପ୍ତ ସ୍ୱୟଂ,
ଯେବେ ଭାରତ ବିଜେତା ରୂପେ ଉଡ଼ାଇଲେ ଧ୍ୱଜା;

ଅନାକ୍ରାନ୍ତ ଥିଲ ଏକା—
କଳିଙ୍ଗ ସାରସ୍ୱ;—ଯାହା ମଗଧ ପଡ଼ୋଶୀ
ପୁଣି ଦାକ୍ଷିଣାତ୍ୟ ଅଭିଯାନେ
ଏକମାତ୍ର ସୁଗମ ଯେ ପଥ ।
ସହସା କଳିଙ୍ଗ ନଭ ହେଲ ଅନ୍ଧାରିତ ।
ବୁଡ଼ିଗଲ ସ୍ୱାଧୀନତା ରବି ।
କଳିଙ୍ଗ ସେନାଏ ଲଢ଼ି ପ୍ରାଣମୂର୍ଚ୍ଛା ରଣେ,
ଗଲେ ଶେଷେ ହାରି ।
ବିଧି—ବିଧି କେ କରିବ ଆନ ?
ଚଣ୍ଡ ଖଡ଼ଗର ଧାରେ
ସାମ୍ୟ ମୈତ୍ରୀ ଧ୍ୱଜା-ଧାରୀ—
ତଥାଗତ ବୁଦ୍ଧ ମତବାଦୀ—
ଅହଂସ କଳିଙ୍ଗ ପୃଷ୍ଠେ
ରକ୍ତ ନଦୀ ହେଲ ପ୍ରବାହିତ ।
ନାଚିଲ କବନ୍ଧ ।
ହିଂସୁକର ତରବାରି ଧାର
ଅକାଳରେ ପୋଛି ଦେଲ
ଲକ୍ଷକୁଳ ସିମନ୍ତିନୀ ସିମନ୍ତ ସିନ୍ଦୁର ।
ଶୂନ୍ୟ କୋଳେ ଚାଲିଗଲେ
ଅଗଣନ ନିରୀହ ଜନତା ।
ଶ୍ମଶାନ ପାଲଟି ଗଲ
କଳିଙ୍ଗର ଜନଭରା ଗ୍ରାମ ଜନପଦ ।

ଧବସରେ ଘେରିଲା ଅନ୍ଧାର
ଅଶୁଭ ଶକୁନ ଦେଲା ଦେଖା ।
(ମଞ୍ଚ ଅନ୍ଧାରିତ ହେଲା—ଛାୟାରେ ଦେଖା ଦେଲା
ଖ୍ରୀଃ ପୂଃ ତୃତୀୟ ଶତାବ୍ଦୀ)
ଧରାଂଗନା ଉଠିଲା ଶିହରି—
ବିଧୁର ଆହତ କଣ୍ଠ, ବିକଳ ଚିତ୍କାରେ
ଭୀମ ହା ହା ରବେ—
(ଦୃଶ୍ୟ ପରିବର୍ତ୍ତନ)

---

## ୯ମ ଦୃଶ୍ୟ

(ରଣକ୍ଷେତ୍ରର ଏକ ଅଂଶ—ନିକଟରେ ଛାଉଣୀ । ଶୁଭୁଥିଲା ଆହତର ବିକଳ ଚିତ୍କାର । କିଏ କାନ୍ଦୁଛି, କିଏ ଚିତ୍କାର କରୁଛି, କିଏ ଟିକିଏ ପାଣି ମାଗୁଛି । ଏହିପରି ସମୟରେ ଛାଉଣୀ ମଧ୍ୟରୁ ହଠାତ୍ ବୀର ଦର୍ପରେ ପ୍ରବେଶ କଲେ ଅଶୋକ,—ମୁଖରେ ତାଙ୍କର ପ୍ରସନ୍ନତା । ସେ ଟିକିଏ କାନ ଡେରି ଶୁଣିଲେ ଏଇ ବିକଳ ଚିତ୍କାର)

ଅଶୋକ—(ଖୁବ୍ ଜୋର୍‌ରେ ହସିଲେ । ଏ ହସ ଯେପରି ଥମିବାର ନୁହେଁ । ଚିତ୍କାର ଯେତେ ଜୋରରେ ଶୁଣା ଯାଉଥାଏ, ଅଶୋକ ସେତେ ଜୋରରେ ହସୁ ଥାଆନ୍ତି । ହସୁ ହସୁ ଡାକିଲେ) ରାକ୍ଷସ ! ରାକ୍ଷସ ! (ପୁଣି ହସୁ ଥାଆନ୍ତି ।)

(ଶିବିର ଦ୍ୱାରରୁ ବେଗେ ପ୍ରବେଶ ହେଲେ ମଗଧ ସେନାପତି)

(ରାକ୍ଷସ—ସେ ଅସି ସମ୍ମାନ ପ୍ରଦର୍ଶନ କଲେ)

ରାକ୍ଷସ—ଆଦେଶ କରନ୍ତୁ ମହାରାଜ !

ଅଶୋକ—ସେନାପତି ! (ଶିଳ୍ପୀର ଅଙ୍ଗୁଳି ଠାରି) ଶୁଣି ପାରୁଚ ?

ରାକ୍ଷସ—ମହାରାଜ !

ଅଶୋକ—କହି ପାରିବ ସେ କିଏ ?

ରାକ୍ଷସ—(କୁଣ୍ଠିତ ହେବା ପରି) କଳିଙ୍ଗର……

ଅଶୋକ—( ସେନାପତିଙ୍କ କଥା ଉପରେ, ହସି ) ହଁ, ହଁ, ଖାଲି କଳିଙ୍ଗ ନୁହେଁ—କଳାବତୀ କଳିଙ୍ଗର ସପ୍ତସ୍ୱରୀ ବୀଣାର ଝଙ୍କାର । ରାକ୍ଷସ ! ଆନନ୍ଦ ହୁଅ ! ମୋର ହସରେ ହସ ମିଶାଇ ଦିଅ ସେନାପତି ! କଳିଙ୍ଗର ଉନ୍ନତ ମସ୍ତକ ଆଜି ନଇଁ ପଡ଼ିଛି ମଗଧର ରାଜଛତ୍ର ତଳେ । ବଡ଼ ଗର୍ବ ଥିଲା ତାର । ଭାରତ ବିଜୟୀ ସମ୍ରାଟ ଚନ୍ଦ୍ରଗୁପ୍ତ କଳିଙ୍ଗକୁ ପଦାନତ କରିପାରି ନ ଥିଲେ ! ସେହି ଗର୍ବରେ କଳିଙ୍ଗରାଜ ମୋର ବିବାହ ପ୍ରସ୍ତାବ ପ୍ରତ୍ୟାଖ୍ୟାନ କରିଥିଲେ । ତାର ପ୍ରତିଫଳ ଭୋଗ କରୁଛି ସାରା କଳିଙ୍ଗର ନରନାରୀ ।

(ନେପଥ୍ୟରୁ ପୁଣି ଅଭିନାଦ)

ଶୁଣ, ଶୁଣ ରାକ୍ଷସ ! କଳିଙ୍ଗ ରାଜଲକ୍ଷ୍ମୀଙ୍କର ବୀଣାରେ ମଧୁର ଆଳାପନା । ଆଃ ! କି ମଧୁର ! କି ଲଳିତ ! (ଛାତି ଚାପି ଧରି) ଆଃ ଏତେ ଦିନେ ପରିପୂର୍ଣ୍ଣ ହୃଦୟ ମୋର । (ଅଳ୍ପ ନୀରବ ରହି) ରାକ୍ଷସ ! ଅଶୋକ ତାର ପ୍ରତିଜ୍ଞା ରକ୍ଷା କରି

ପାରନ୍ତି । କେହି ଆଜ ଅସ୍ୱୀକାର କରି ପାରିବେ ନାହିଁ ମଗଧର ଏ ବିଜୟ ଅଭିଯାନ । କଳିଙ୍ଗର ପୁରପଲ୍ଲୀ ନଗର ପ୍ରାନ୍ତର—ଧୂଳିକଣା ପର୍ଯ୍ୟନ୍ତ······

ରାଧସ—କିନ୍ତୁ ମହାରାଜ ! ······(ସଙ୍କୋଚରେ ନୀରବ ହେଲେ)

ଅଶୋକ—(ଟିକିଏ ଭାବି, ପୁଣି ଗମ୍ଭୀର ଭାବେ) ହଁ ସେନାପତି ! ସେଇ କିନ୍ତୁ—କିନ୍ତୁ କି ସାହସ, କି ଗର୍ବ, କି ଦମ୍ଭରେ ଅଦ୍ୟାପି କଳିଙ୍ଗରାଜ ରାଜକୁମାରୀଙ୍କ ବିବାହ ପ୍ରସ୍ତାବରେ ସମ୍ମତି ଦେଇ ନାହାନ୍ତି ? ଖୋଜିବାକୁ ହେବ—ସେଇ—କିନ୍ତୁ—ସେଇ କିନ୍ତୁର କାରଣ । ଏବେ ମଧ୍ୟ ତାଙ୍କର ବିଶ୍ୱାସ ଯେ ତାଙ୍କର ତଥାଗତ କଳିଙ୍ଗରେ ସୁଖ ଶାନ୍ତି—ଅଖଣ୍ଡ ରାଜତ୍ୱ ଫେରାଇ ଆଣି ଦେବେ ? ଏବେ ମଧ୍ୟ ପରାଜିତ ନିର୍ଲଜ୍ଜ ମୁଖରେ ସେ କହିବାକୁ ଚାହାନ୍ତି—"ବୁଦ୍ଧଂ ଶରଣଂ ଗଚ୍ଛାମି ।"

ରାଧସ—ଅସମ୍ଭବ ମହାରାଜ ! ଯଦି ଏହାହିଁ ହୁଏ ସତ୍ୟ—ତେବେ ବୁଝିବାକୁ ହେବ ଯେ କଳିଙ୍ଗରାଜ ମତିଭ୍ରଷ୍ଟ—ବାତୁଳ ସେ—

ଅଶୋକ—ଏବେ ମଧ୍ୟ ସମୟ ଅଛି ସେନାପତି ! ଏତେବେଳେ ମଧ୍ୟ ଯଦି ତାଙ୍କର ସଦ୍‌ବୁଦ୍ଧି ହୁଏ—କଳିଙ୍ଗ କୁମାରୀ ବିଜୟୀ କରରେ ସମର୍ପିତା ହୁଅନ୍ତି; କଳିଙ୍ଗ ବିଜେତା ସମ୍ରାଟ ଅଶୋକ ସମସ୍ତ ପ୍ରତ୍ୟର୍ପଣ କରି ହସି ହସି ମଗଧକୁ ବାହୁଡ଼ି ଯିବ ।

ରାଧସ—କିନ୍ତୁ, ସେ କଅଣ ଆଉ ସମ୍ଭବ ମହାରାଜ !

ଅଶୋକ—ଅସମ୍ଭବ ! କାହିଁକି ଅସମ୍ଭବ ? ମୁଁ ତ ସମସ୍ତ ପ୍ରତ୍ୟର୍ପଣ କରିବାକୁ ପ୍ରସ୍ତୁତ ଅଛି । ଏ ଅଶୋକର ବାକ୍ୟ—ଅଶୋକର ପ୍ରତିଜ୍ଞା । କଳିଙ୍ଗର ସୁନ୍ଦରୀ ରାଜକୁମାରୀ ଯଦି···
(ନେପଥ୍ୟରୁ ମଧୁର କଣ୍ଠରେ ଶୁଣାଗଲା)

ବୁଦ୍ଧଂ ଶରଣଂ ଗଚ୍ଛାମି
ସଂଘଂ ଶରଣଂ ଗଚ୍ଛାମି
ଧର୍ମ୍ମଂ ଶରଣଂ ଗଚ୍ଛାମି ।

ଅଶୋକ—(ପୂର୍ବର କଥା ବନ୍ଦ କରି) ଓଃ, ପୁଣି ! ଦେଖ ରାକ୍ଷସ ! କିଏ !
(ରାକ୍ଷସ ସ୍ୱର ଅନୁକୂଳ ଅଗ୍ରସର ହେଲେ)
ଗଳାର କି ମାଧୁରୀ ! କିନ୍ତୁ···ପୁଣି ସେହି—

ବୁଦ୍ଧଂ ଶରଣଂ ଗଚ୍ଛାମି ।

(ପ୍ରବେଶ କଲେ ଜଣେ ଅପରୂପ ମୂର୍ତ୍ତିମତୀ ଯୁବତୀ ଗୈରିକ-ବସନା, ଅଳଙ୍କାରହୀନା)

ଅଶୋକ—କିଏ ତୁମେ, ଅଲୋକସାମାନ୍ୟା ସୁନ୍ଦରୀ ! କଳିଙ୍ଗର ଜଣେ ସାଧାରଣ ନାରୀର ଏତେ ରୂପ ! ତେବେ କଳିଙ୍ଗର ରାଜକୁମାରୀ···

ଯୁବତୀ—ଦିଗ୍‌ଜୟୀ ମହାବୀର ! ଆପଣ ବର୍ତ୍ତମାନ କହୁଥିଲେ ଯେବେ କଳିଙ୍ଗ ରାଜକୁମାରୀ ଆପଣଙ୍କ କରରେ ସମର୍ପିତା ହୁଅନ୍ତି······

ଅଶୋକ—ହଁ, ହଁ ସୁନ୍ଦରୀ ! ମୁଁ ପୁଣି ସମସ୍ତ ପ୍ରତ୍ୟର୍ପଣ କରିବାକୁ ପ୍ରସ୍ତୁତ ଅଛି । ଏ କେବଳ ମୁଖର କଥା ନୁହେ—ଦିଗ୍-ବିଜୟୀ ଅଶୋକର ପ୍ରତିଜ୍ଞା !

---

ଯୁବତୀ—ଏ ପ୍ରତିଜ୍ଞାର ମୂଲ୍ୟ ରକ୍ଷା କରିବେ ତ ମହାରାଜ !

ଅଶୋକ—ଏହା ମୋର ହିତାର ସତ୍ୟ ! କଳିଙ୍ଗରାଜ ମୋର ଅନୁରୋଧ ପ୍ରତ୍ୟାଖ୍ୟାନ କରି ନ ଥିଲେ ଆଜି ମଗଧ ଓ କଳିଙ୍ଗ ଚିର ସ୍ନେହ ବନ୍ଧନରେ ଆବଦ୍ଧ ହୋଇ ରହି ଥାଆନ୍ତା । କିନ୍ତୁ······

ଯୁବତୀ—କିନ୍ତୁ କିଛି ନୁହେ ମହାରାଜ ! ଆପଣ ଏହି ଶପଥ ଆଜ୍ଞା ଘୋଷଣା କରି ପାରିବେ ? ତାହାହେଲେ କଳିଙ୍ଗ ରାଜକୁମାରୀ ଆପଣଙ୍କର କରଗତ ବୋଲି ମନେ କରନ୍ତୁ ।

ଅଶୋକ—ଅବିଳମ୍ବେ ଏ ଘୋଷଣା ପ୍ରଚାରିତ ହେଉ । ରାକ୍ଷସ ! (ଗୁହାରିଲେ)

ରାକ୍ଷସ—ଯଥା ଆଜ୍ଞା ମହାରାଜ ! (ପ୍ରଣାମକରି ବେଗେ ଚାଲିଗଲେ)

ଅଶୋକ—କିନ୍ତୁ ସୁନ୍ଦରି ! ତୁମକୁ ତୁମର ବାକ୍ୟ ରକ୍ଷା କରିବାକୁ ହେବ ।

ଯୁବତୀ—ସେ ସାହସ ନ ଥିଲେ ମୁଁ ଜାଣି ଶୁଣି ପ୍ରଳୟର ଅଗ୍ନି କୁଣ୍ଡରେ ଝାସ ଦେବାକୁ ଆସି ନ ଥାନ୍ତି ମହାରାଜ !

ଅଶୋକ—ତୁମେ ଏଭଳି ସାହସ କିପରି କରୁଛ ?

ଯୁବତୀ—ମୋ କଥାରେ ଆପଣ ବିଶ୍ୱାସ ସ୍ଥାପନ କରନ୍ତୁ ସମ୍ରାଟ !

ଅଶୋକ—କିନ୍ତୁ ଏ ବିଶ୍ୱାସର ଆଶ୍ୱାସ ?

ଯୁବତୀ—ପଥ ପରିଷ୍କାର । ମୁଁ ରାଜକୁମାରୀଙ୍କର ସମ୍ମତି ପାଇଛି ।

ଅଶୋକ—(ଆନନ୍ଦରେ) ସମ୍ମତି । କଳିଙ୍ଗ ରାଜକୁମାରୀଙ୍କର ସମ୍ମତି ! ତୁମେ—ତୁମେ ପାଇଛ ଯୁବତି ! ଏ କଅଣ ସତ୍ୟ ? ଏ କିପରି ସମ୍ଭବ ?

ଯୁବତୀ—ଅସମ୍ଭବ ମଧ୍ୟ କାଳେ ସମ୍ଭବ ହୁଏ ମହାରାଜ । କିନ୍ତୁ ଆପଣଙ୍କର ଘୋଷଣା ପତ୍ରର ପୂର୍ବରୁ କୌଣସି କଥା ପ୍ରକାଶର ନିର୍ଦ୍ଦେଶ ନାହିଁ ।

(ନେପଥ୍ୟେ ନାଗରା ଶବ୍ଦ)

ଅଶୋକ—(ନାଗରା ଅଭିମୁଖେ ନିର୍ଦ୍ଦେଶ କରି) ଶୁଣ, ଶୁଣ ସୁନ୍ଦରି । ରାଜାଦେଶ ଅବିଳମ୍ବେ ପ୍ରତିପାଳିତ ହୋଇଛି । ବର୍ତ୍ତମାନ......

ଯୁବତୀ—ପ୍ରସ୍ତୁତ ଅଛି ମହାରାଜ । ସମ୍ମୁଖରେ ଆପଣଙ୍କର କଳିଙ୍ଗ ରାଜ-କୁମାରୀ-ଅଭିସାରିକା ।

ଅଶୋକ—କଳିଙ୍ଗ ରାଜକୁମାରୀ । କିନ୍ତୁ ଏ ବେଶରେ ? (ଗୃହ୍ଣି ରହି) ଭସ୍ମାଚ୍ଛାଦିତ ବହ୍ନି ଶିଖା । ଦାହିକା ଶକ୍ତି ତାର ମରିଚଯିର ଅବକାଶ ରଖେ ନାହିଁ ରାଜକୁମାରି । ଅଶୋକ ତାର ପ୍ରତିଜ୍ଞା ପୂରଣ କରିବ । ବିଜିତ ରାଜ୍ୟ, ଧନ ଧାନ୍ୟ ପ୍ରତ୍ୟର୍ପଣ କରିବ । ଅଶୋକ ସର୍ବସ୍ୱ ତ୍ୟାଗ କରିବାକୁ ପ୍ରତିଶ୍ରୁତି ଦେଉଛି । ଅଶୋକ ଆଜି କାହାରି ବାଞ୍ଛା ଅପୂରଣ ରଖିବ ନାହିଁ । ରାଜକୁମାରୀ ଦେଖିବେ ଅଶୋକ କେବଳ ମହାବୀର ନୁହେ—ମହାଦାନୀ ମଧ୍ୟ ।

(ଥରି ଥରି ନଇଁ ନଇଁ ଗୋଟିଏ ବୁଢ଼ୀ ଅସିଛି)

ବୁଢ଼ୀ—(ବିକଳ କଣ୍ଠରେ) କିଏ ଅଛ ବାପା । ମହାରାଜା କାହାନ୍ତି ?

ଯୁବତୀ—କଅଣ ବୁଢ଼ି । କଅଣ କହୁଛ, କହ । ମହାରାଜ ଅଶୋକ ତୁମ ଆଗରେ ଠିଆ ହୋଇଛନ୍ତି ।

---

ବୁଢ଼ୀ—(ମୁଣ୍ଡିଆ ମାରି) ଦାଣ୍ଡରେ ଢେଣ୍ଡୁରା ଶୁଣିଲି । ମହାରାଜା ଯାହାର ଯାହା ଏ ଯୁଦ୍ଧରେ ନେଇଛନ୍ତି ସବୁ ଫେରାଇ ଦେବେ । ଯେ ଯାହା ମାଗିବ ସେ ତା ପାଇବ ! ଏ କଥା କଅଣ ସତ ?

ଅଶୋକ—ହଁ । ଏକଥା ନିହାତି ସତ୍ୟ । ଯୁଦ୍ଧରେ ଯାହାର ଯାହା କ୍ଷତ ହୋଇଛି ସେ ଫେରି ପାଇବ । ତୁମେ କଅଣ ମାଗୁଛ ବୁଢ଼ୀ ? କଳିଙ୍ଗ ଯୁଦ୍ଧରେ ତୁମର କି କ୍ଷତ ହୋଇଛି ?

ବୁଢ଼ୀ—(ଗୃହିଁ) ଏଁ । ମଣିମା । ଛାମୁ, ମୁଁ ଭାରି ଗରିବ ଲୋକ ।

ଅଶୋକ—(ତିନି ତାଳି ମାରିଲେ—ସଙ୍ଗେ ସଙ୍ଗେ ପ୍ରତିହାରୀ ପ୍ରବେଶ କରି ଅଭିବାଦନ କଲେ) ଏ ବୁଢ଼ୀକୁ ଏକଶତ ସ୍ୱର୍ଣ୍ଣମୁଦ୍ରା ଦିଅ ।

ପ୍ରତିହାରୀ—ଯେ ଆଜ୍ଞା ମହାରାଜ ।

ବୁଢ଼ୀ—ନାଇଁ ନାଇଁ ମଣିମା—

ଅଶୋକ—ତେବେ ଏକସହସ୍ର ସ୍ୱର୍ଣ୍ଣମୁଦ୍ରା ! ଯାଅ ।

(ପ୍ରତିହାରୀ ଚାଲିଗଲା)

ବୁଢ଼ୀ—ମୁଁ ତାକୁ ନେଇ କଅଣ କରିବି ? ମୋର ଧନ କଅଣ ହେବ ?

ଅଶୋକ—ବେଶ୍, ଖଣ୍ଡିଏ ଗ୍ରାମ ?

ବୁଢ଼ୀ—କିଏ ମୋର ଗାଁ ବୁଝିବ, ଛାମୁ ମୋର କିଏ ଅଛି ? ତିନି ତିନୋଟି ଜେଣ୍ଡା ପୁଅ ଥିଲେ ମୋର । ଏଇ ଲଢ଼େଇରେ ଆସି ଆଉ ବାହୁଡ଼ିଲେ ନାହିଁ । ବୁଢ଼ୀକାଳେ ମୁଁ ନିଅଣ୍ଟୀ ହେଲି । ତୁଣ୍ଡରେ ପାଣି ଟୋପାଏ ଦବାକୁ ଆଉ ତ କେହି

ନାହିଁ । ମୋତେ ମୋ ପୁଅ ତିନିଟିଙ୍କି ବାହୁଡ଼ାଇ ଦିଅ
ମଣିମା । ବୁଢ଼ୀ ଲୋକ । କେତେ କଇଲଣି କରିବ ।

ଅଶୋକ—ଅସମ୍ଭବ କଥା କହୁଚ ବୁଢ଼ୀ ।

ଯୁବତୀ—କାହିଁକି ମହାରାଜ ! ଆପଣ ତ ସତ୍ୟ କରିଛନ୍ତି—ଷଢ
ପୂରଣ କରିବେ । ଯାହାର ଯାହା ଯାଇଛି, ତାକୁ ତାହା
ଫେରାଇ ଦେବେ । ତେବେ ନିଜର କଥା ନିଜେ ରଖୁ
ନାହାନ୍ତି କାହିଁକି ? ସତ୍ୟ ରକ୍ଷା କରନ୍ତୁ ସମ୍ରାଟ ।

ଅଶୋକ—ଦେବି ! ଏ ଯେ ଅସମ୍ଭବ ପ୍ରାର୍ଥନା !

ଯୁବତୀ—ପ୍ରତିଜ୍ଞା ପୂର୍ବରୁ ଏ କଥା ଭାବିବା ଉଚିତ୍ ଥିଲା ମହାରାଜ !
ଦିଗ୍‌ବିଜୟୀ ସମ୍ରାଟ ଅଶୋକ ଯାହା ଦେଇ ନ ପାରିବେ,
ତାକୁ ନେଲେ କାହିଁକି ? ଦେବାର ଅଧିକାର ନ ଥିଲେ
ନେବାର ଲୋଭ କାହିଁକି ?

ବୁଢ଼ୀ—ମୁଁ ଆଉ କିଛି ମାଗୁ ନାହିଁ ମଣିମା ! ମୋ ପିଲା ତିନୋଟିଙ୍କୁ
ବାହୁଡ଼େଇ ଦିଅନ୍ତୁ । ତୁମ୍ଭଙ୍କର ଉନ୍ନତି ହେବ । ଦେଇବ
ନାହିଁ ମଣିମା ? ମିଛଟାରେ ତେବେ ରାଇଜଯାକ ଧେଣ୍ଡୁରା
ପିଟେଇ ଥିଲେ ? ବାମ୍ଭଣୀ ପରି ମିଛରେ ମୁଁ ଦଉଡ଼ି
ଆସିଲି—ବନ୍ଧୁରେ ! ଦାମରେ ! ରାମରେ ! ମୋ ଯିବା ଧନ
ଆଉ ବାହୁଡ଼ାଇ ଦବ କିଏ ?

(କାନ୍ଦି କାନ୍ଦି କହି କହି ଚାଲିଗଲା)

(ଅଶୋକ ବୁଢ଼ୀକୁ ଚାହିଁ ରହିଲେ ନୀରବରେ)

ଯୁବତୀ—କାହିଁ ? ଉତ୍ତର ଦେଲେ ନାହିଁ ଦିଗ୍‌ବିଜୟୀ ସମ୍ରାଟ ଅଶୋକ ! ନିଜର ବାଞ୍ଛା ନିଜେ ରକ୍ଷା କରି ପାରିଲେ ନାହିଁ ତ !

(ପ୍ରବେଶ କଲେ ଭିକ୍ଷୁ ଉପଗୁପ୍ତ)

ଉପଗୁପ୍ତ—ବୁଦ୍ଧଂ ଶରଣଂ ଗଚ୍ଛାମି ।

ଅଶୋକ—କିଏ ଆପଣ ? ଆଗମନର ଅଭିପ୍ରାୟ ?

ଉପଗୁପ୍ତ—କଳିଙ୍ଗ ବିଜେତା ପ୍ରବଳ-ପରାକ୍ରାନ୍ତ ମହାରାଜ ଅଶୋକ ପ୍ରାର୍ଥୀର ବାଞ୍ଛା ପୂରଣ କରିବାକୁ ଘୋଷଣା କରିଛନ୍ତି । ମୁଁ ଜଣେ ନଗଣ୍ୟ ଭିକ୍ଷୁ । କହିଁତ୍ ଭିକ୍ଷା ପ୍ରାର୍ଥନା ଲାଗି···

ଅଶୋକ—ବୌଦ୍ଧ ଭିକ୍ଷୁ ଆପଣ ! ଆପଣଙ୍କର ପୁଣି କି ଭିକ୍ଷା ପ୍ରାର୍ଥନା ?

ଉପଗୁପ୍ତ—ଧନ ଜନ ବା ରାଜ୍ୟ ନୁହେଁ ମହାରାଜ—ଅତି ସାମାନ୍ୟ ପ୍ରାର୍ଥନା ମୋର—ସୁଖ, ଶାନ୍ତି !

ଅଶୋକ—ଜାଣନ୍ତି ତ କଳିଙ୍ଗ ଯୁଦ୍ଧର ଅବସାନ ଘଟିଛି । ତେବେ ଆଉ······

ଉପଗୁପ୍ତ—ଯୁଦ୍ଧ ଅବସାନ ହୋଇଛି ସତ୍ୟ ମହାରାଜ । କିନ୍ତୁ କାହିଁ ? ଫେରି ନାହିଁ ତ କଳିଙ୍ଗର ସେ ସୁଖ—ସେ ଶାନ୍ତି । ମହାରାଜ ତାହା ପ୍ରତ୍ୟର୍ପଣ କରିବେ—ରାଜଘୋଷଣାର ମହତ୍ତ୍ୱ ରକ୍ଷା କରିବେ—ଭିକ୍ଷୁର ଆଶା ପୂରଣ କରିବେ ସମ୍ରାଟ । ଏହି ନିବେଦନ ।

ଅଶୋକ—ମାନି, ବର୍ତ୍ତମାନ ତ ଆଉ ଆକ୍ରମଣର ଭୟ ନାହିଁ ଭିକ୍ଷୁ ! ତେବେ ଆଉ······

ଉପଗୁପ୍ତ—ସତ୍ୟ କହୁଛନ୍ତି ସମ୍ରାଟ ! ଆକ୍ରମଣ ନାହିଁ, କିନ୍ତୁ ତାର ପରିଣତି ! ଶୁଣି ପାରୁଛନ୍ତି (ନେପଥ୍ୟରୁ ଆର୍ତ୍ତିଧ୍ୱନି ଶୁଭିଲା) ! ସମ୍ରାଟ ! ଏଇ ସୁଖ-ଶାନ୍ତିହରା ନିସ୍ୱହର ମର୍ମଭେଦୀ କାତର କ୍ରନ୍ଦନ ! ଟିକିଏ ଅବହିତ ଚିତ୍ତରେ ଶ୍ରବଣ କରନ୍ତୁ ମହାରାଜ ! —କେବଳ ନିର୍ଦ୍ଦୋଷ ଜନତାର ନୁହେଁ—କଳିଙ୍ଗର ନିର୍ଜୀବ ପାଷାଣ ବକ୍ଷତଳେ ଗୁମରି ଉଠୁଛି ଅଶାନ୍ତିର ହାହାକାର । ପବିତ୍ର ଦେବ ମନ୍ଦିରରେ ସନ୍ଧ୍ୟାରତିର ବାଦ୍ୟ ବାଦକ ଅଛି ଶୃଗାଳ, କୁକୁର, ଉଲ୍ଲୁକ ।

ଅଶୋକ—(ଚମକିବା ପରି) ଭିକ୍ଷୁ !

ଉପଗୁପ୍ତ—ଆଦେଶ କରନ୍ତୁ ସମ୍ରାଟ ! ଭିକ୍ଷୁର ପ୍ରାର୍ଥନା ପୂରଣ କରନ୍ତୁ । (ନେପଥ୍ୟକୁ ଚାହିଁ) ଏଇ ଦେଖନ୍ତୁ, ଦେଖନ୍ତୁ ମହାରାଜ ! ଅଶାନ୍ତିର ଘୂର୍ଣ୍ଣିବାତ୍ୟା ହାହାକାର କରି ଧୂଳି ଗୋଟାଇ ଗ୍ରୁଲିଯାଏ । ମହାରାଜ ! ନିବେଦନ ରକ୍ଷା କରନ୍ତୁ । ଏ କେବଳ ମୋର ନୁହେଁ, ମାନବ ସମାଜର ବଞ୍ଚିତ ନିବେଦନ ! ଦିଗବିଜୟୀ ସମ୍ରାଟ ! ବିଜୟ ସାର୍ଥକ ହେଉ ଆପଣଙ୍କର । ଫେରିଆସୁ ଉଜୁଡ଼ି କଳିଙ୍ଗର ବିଗତ ସୁଖ ଶାନ୍ତି !

ଅଶୋକ—ସୁଖ ! ଶାନ୍ତି ! ଭିକ୍ଷୁ ! ପ୍ରଳାପ ନୁହେଁ ତ ଆପଣଙ୍କର !

ଉପଗୁପ୍ତ—ନା, ମହାରାଜ ! ତଥାଗତଙ୍କ ନାମୋଚ୍ଚାରଣ କରି କହୁଛି—ମୁଁ ସମ୍ପୂର୍ଣ୍ଣ ସୁସ୍ଥ । ଭିକ୍ଷା ମୋର କେବଳ ସୁଖ ଶାନ୍ତି ।

---

ଅଶୋକ—ଭିକ୍ଷା ! —ଅସମ୍ଭବ ଏ ପ୍ରାର୍ଥନା !

ରାଜକୁମାରୀ—କିନ୍ତୁ ସମ୍ରାଟ ଯେ ପ୍ରତିଜ୍ଞା କରିଥିଲେ ।

ଅଶୋକ—ପ୍ରତିଜ୍ଞା !··· କିନ୍ତୁ······

ଉପଗୁପ୍ତ—ବିଶାଳ ଧରିତ୍ରୀର ଅମିତ ବଳଶାଳୀ ଅଧୀଶ୍ୱର ଆପଣ । ଜଣେ ହୀନାତିହୀନ ଭିକ୍ଷୁର ସାମାନ୍ୟ ପ୍ରାର୍ଥନା ପୂରଣରେ କିନ୍ତୁ ପ୍ରକାଶ କଲେ ? ତେବେ ମୁଁ ଆସୁଛି ମହାରାଜ ! ଆଜି, ବିଦାୟବେଳେ କହିଯାଏଁ କଳିଙ୍ଗ ବିଜେତାଙ୍କୁ, ମାନବ ଜୀବନର ସୁଖ ଶାନ୍ତି ଦାତା ହିଁ ବାସ୍ତବରେ ବିଜେତା ! ହିଂସାର ଜୟ । —ସେ ତ ବୀରତ୍ୱର ପରାଜୟ ! ମାତ୍ର । ଆସୁଛି ମହାରାଜ !

ବୁଦ୍ଧଂ ଶରଣଂ ଗଚ୍ଛାମି (ପ୍ରସ୍ଥାନ)

(ଅଶୋକ ତାଙ୍କ ଯିବା ପଥକୁ ଚାହିଁ ରହି ନୀରବ)

ରାଜକୁମାରୀ—ନୀରବ ରହିଲେ ଯେ ବିଜୟୀ ସମ୍ରାଟ ! ପ୍ରଗଲ୍‌ଭ ଭିକ୍ଷୁର ସମୁଚିତ ଦଣ୍ଡବିଧାନ ନ କରି······

ଅଶୋକ—ଆଜି ତୁହେଁ ରାଜକୁମାରୀ ! ଚେତନା ଫେରି ଆସିଛି ମୋ'ର । ବୁଝି ପାରୁଛି କଳିଙ୍ଗ କେଉଁ ବଳରେ ବଳୀୟାନ । କାହିଁକି କଳିଙ୍ଗରାଜ ନିର୍ଭିକ । ଜଣେ ସାମାନ୍ୟ ନାରୀ ଆଜି [illegible] ହୀନହୀନ ଭିକ୍ଷୁ, ଆଜି ମୋର ଚକ୍ଷୁ ଫିଟାଇ ଦେଇଛନ୍ତି । [illegible] ପାରୁଛି ମୁଁ—କିନ୍ତୁ ଫେରାଇ ଦେବାର ଶକ୍ତି ମୋର ନାହିଁ [illegible] ମୁଁ ଅପହରଣ କରିଛି ଲକ୍ଷ ଲକ୍ଷ ନିରପରାଧ ଜନ[illegible] ସୁଖ, ଶାନ୍ତି—ସର୍ବସ୍ୱ ! ମୋତେ କ୍ଷମା କରନ୍ତୁ ଦେବି !

---

ଯୁଗେ ଯୁଗେ ଉତ୍କଳ

ରାଜକୁମାରୀ—କ୍ଷମା ! ମୁଁ ତଥାଗତଙ୍କର ଘରର ସେବିକା ମାତ୍ର । ଅତ୍ତ ଭୁଲନ୍ତୁ ଶାକ୍ୟମୁନି କଳିଙ୍ଗ ରାଜକନ୍ୟା ତ ନୁହେଁ । ସାମାନ୍ୟା ବୌଦ୍ଧ ଭିକ୍ଷୁଣୀ । ଆପଣ ରାଜ-ରାଜେଶ୍ୱର । ଆପଣ ବିଜେତା । ଚଣ୍ଡ ତରବାରୀର ନିର୍ମମ ଆଘାତରେ ସାମ୍ରାଜ୍ୟ ଜୟ କରିଛନ୍ତି । କିନ୍ତୁ ମହାରାଜ—ପ୍ରଜା ଯେଉଁ ତ ରାଜା ! ପ୍ରଜାର ହୃଦୟକୁ ଆପଣ ଜୟ କରି ପାରି ନାହାନ୍ତି । ଜିଣିଛନ୍ତି କେବଳ ଗୋଡ଼ି, ମାଟି, ପର୍ବତ, କଙ୍କର, ନଦୀ, ନଦ—ଯାହା ନିର୍ଜୀବ—ପ୍ରାଣହୀନ । ପ୍ରାଣର ବିଜେତା ହିଂସା ନୁହେଁ—ପ୍ରେମ । ମହାରାଜ ଅଶୋକ ପ୍ରଜାଶୂନ୍ୟ ରାଜ୍ୟର ବିଜୟୀ ସମ୍ରାଟ । କୋଟି କୋଟି ନିରୀହର ଅଭିଶାପ ନିଃଶ୍ୱାସରେ ଆପଣଙ୍କର ବିଜିତ ସିଂହାସନ ବିଷାକ୍ତ । ବିଷ-ଦଂଶନ ଛଡ଼ା ଆପଣଙ୍କୁ ମଧୁ ଚୁମ୍ବନ ଦେଇ ପାରିବ ନାହିଁ ସେ । ବର୍ତ୍ତମାନ ତ ବୁଝି ପାରିଲେ—ନେବା ଯେତିକି ସହଜ—ଦେବା ସେତିକି କଠିନ ;— କିମ୍ବା ଅସମ୍ଭବ । ସଚେତ ହୁଅନ୍ତୁ ମହାରାଜ ! ଏବେ ମଧ୍ୟ କାଳ ଅତୀତ ନୁହେଁ ।

ଅଶୋକ—କ୍ଷମା ! କ୍ଷମା କରନ୍ତୁ ରାଜକୁମାରି ! ଆପଣ ଦେବୀ । ଚଣ୍ଡାଶୋକର ଆଖି ଖୋଲି ଦେଇଛନ୍ତି । ସେ ନତ ମସ୍ତକରେ ମାଗୁଛି କ୍ଷମା । (ତରବାରୀ ରାଜକୁମାରୀଙ୍କ ପଦତଳେ ରଖିଲେ)

ରାଜକୁମାରୀ—କ୍ଷମା ! ଏ ଜଗତରେ କ୍ଷମା ଦେବାର ଅଧିକାର ଏକା ସେହି ତଥାଗତଙ୍କର । କହିଛି ତ ମୁଁ ତାଙ୍କର ଘର ସେବିକା ମାତ୍ର । ପରମ ଦୟାଳୁ ସେ । ସେ ଆପଣଙ୍କୁ

କ୍ଷମା ଦେବେ । ସର୍ବ ପାପହାରୀ, ସର୍ବ ଦୁଃଖହାରୀ ପରମ-
କାରୁଣିକ ସେହି ତଥାଗତଙ୍କର ଶରଣାଗତ ହୁଅନ୍ତୁ—
(ଅର୍ଘ ମୁଦ୍ରା ହାତ ଯୋଡ଼ି)

ବୁଦ୍ଧଂ ଶରଣଂ ଗଚ୍ଛାମି
ସଂଘଂ ଶରଣଂ ଗଚ୍ଛାମି
ଧର୍ମ୍ମଂ ଶରଣଂ ଗଚ୍ଛାମି ।
(ଅଶୋକ୍ର ତଥାକରଣ)

(ଦୃଶ୍ୟ ପରିବର୍ତ୍ତନ)

---

## —ଏକାଦଶ—

କଣ୍ଠପ୍ରାଣ—'ବୁଦ୍ଧଂ ଶରଣଂ ଗଚ୍ଛାମି'
କଳିଙ୍ଗର ଗିରି ଗୁହା କାନନ କନ୍ଦରେ,—
ପ୍ରତିଧ୍ୱନି ଖେଳିଗଲା ବେଗେ ।
ସର୍ବ ଧର୍ମ୍ମ ସମନ୍ୱୟୀ ଜଗନ୍ନାଥ ଦେଶେ—
ବୋଧି-ପ୍ରାଣ, ତଥାଗତ
ସତ୍ୟ ଧର୍ମ୍ମ ଅହିଂସାର ବାର୍ତ୍ତା-ପ୍ରଚାରକ
ଭିକ୍ଷୁ ଉପଗୁପ୍ତ—
ଦୀକ୍ଷା ଗୁରୁ ରୂପେ,
ଚଣ୍ଡାଶୋକେ ଧର୍ମ୍ମାଶୋକେ ଦେଲେ ପାଲଟାଇ ।

---

ରାଜ ଅନୁଗତ ଧର୍ମ୍ମ ।
ରାଜ-ବାଣୀ :—
"ଲୋକ ମାନେ,
ସରବେ ସନ୍ତାନ ମୋର ।"
କଳିଙ୍ଗର ଗିରି ଗୁହା,
ସ୍ତମ୍ଭ, ସ୍ତୂପ ଗାତେ—
ଅହିଂସ ଅଶୋକ ବାଣୀ
ରାଜାଦେଶେ
ଖୋଦିଲେ ଶିଳ୍ପିଏ—
ଧର୍ମ୍ମଶୋକ ଚଣ୍ଡରୂପ ଭୁଲି ।
କେବଳ କଳିଙ୍ଗ ନୁହେଁ,
ଦୂର ଦେଶ ଦେଶାନ୍ତରେ
ରାଜଦୂତଂ ଗଲେ ପ୍ରଚାରକ ।
ବହୁ ବୌଦ୍ଧ ଭିକ୍ଷୁ, ନେଇ ଧର୍ମ୍ମ ଧ୍ୱଜା—ଅହିଂସର ବାର୍ତ୍ତା
ଲଙ୍ଘି ସିନ୍ଧୁ,
ଉଡ଼ାଇ ଶରାଳ,
ଉତ୍କଳୀ ବୋଇତ ଚଢ଼ି
ପ୍ରଚାରିଲେ ଅଶୋକ ନିର୍ଦ୍ଦେଶେ ।
ଆଉ ଆନ କଥା,
ଦୃଷ୍ଟାନ୍ତ ଦେଖାଇ ଦେଲେ
ସମ୍ରାଟ ଆପଣେ ;—
ଯିନେ ଯେବେ

ବୋଧି ବୃକ୍ଷ ଶାଖା ଘେନି
ସୁବର୍ଣ୍ଣ କୁମ୍ଭରେ
କଳିଙ୍ଗର ବହୁ ବିପ୍ର,
ସାମନ୍ତ, ଗୃହସ୍ଥ ତୁଲେ
ଅଲ୍ଥଲ ରାଜହେମା
ନବ ସପତ ବୟସୀ
ସଙ୍ଘ ମିତ୍ରା—
ଦୀନା ଭିକ୍ଷୁଣୀର ବେଶେ,
ତାମ୍ରଲିପ୍ତ ପୋତାଶ୍ରୟୁ ଠାରୁ
ଚଳିଲେ ସିଂହଳେ ।
ସିଂହଳର ରାଜପଥେ
ପଡ଼ିଲା ଚହଳ:—
"ବୁଦ୍ଧଂ ଶରଣଂ ଗଚ୍ଛାମି ।"
ଦେବ ନାମ ପ୍ରିୟତିସ ନାମେ
ସିଂହଳ ନୃପତି,
ଆପେ ପାଛୋଟି ଘେନିଲେ
ତାଙ୍କୁ ଅତୀବ ସମ୍ଭ୍ରମେ ।
ଏହି ସେ ସିଂହଳ ଦ୍ୱୀପ :—
ପ୍ରସ୍ତର ନିଶାଣ ଯହିଁ, ପୋଲନ୍ନରୁଅରେ
ନିଶଙ୍କ ମଲ୍ଲ କୀର୍ତ୍ତି
ରଟେ ଅଜି ଅମର ଅକ୍ଷରେ ।
ଶତାବ୍ଦୀ ମାନବ

ପଢ଼େ ତହିଁ ନିଶଙ୍କ ମଲ୍ଲଙ୍କ ଲେଖାଃ—
ରାଜ ବଂଶଧାରା—
ଜନ୍ମଭୂମି ତାହାଙ୍କର କଳିଙ୍ଗର ସିଂହପୁରେ
ଅଛି,
ସିଂହଳର ଆଦ୍ୟ ନରପତି
ବିଜୟୀ 'ବିଜୟ'
କଳିଙ୍ଗର ରାଜକୁମାର ଯେ ।
କଳିଙ୍ଗେ ଖେଳିଲା ଶାନ୍ତି ଧାରା ।
କିନ୍ତୁ ନିର୍ବାଣ ପ୍ରଦୀପେ ତୈଳ ସର
ସୁବାସ ସୁମନ ଯେପତେ
ଅକାଳେ ପଡ଼ନ୍ତି ଝଡ଼ି କଳିଙ୍ଗ କାନନ୍ତୁ ।
ଅପାଶୋରା ସେ ଅଶୁଭ ଲଗ୍ନ ।
ଅଲିଭା ସେ କଳିଙ୍ଗ ବକ୍ଷରୁ ।

ତେଣୁ ଧର୍ମାଶୋକ ମରଣାନ୍ତେ,
ସପ୍ତ ବର୍ଷ କାଳ ମଧ୍ୟେ,
ଚେଦୀ ବଂଶ ଘେନି
କଳିଙ୍ଗ ନଭେ ଉଡ଼ିଲା ସ୍ୱାଧୀନ ପତାକା ।
ଲେଖା, ରୂପ, ବ୍ୟବହାର,
ବିଧି ଅଙ୍କ ଗଣନା, ସଙ୍ଗୀତେ,
ଅର୍ଜି ଚତୁରତା,
ପଞ୍ଚଦଶ ବର୍ଷୀୟ ଯୁବକ
ଦୋର୍ଦ୍ଦଣ୍ଡ ମାର୍ତ୍ତଣ୍ଡ-ପ୍ରଭ

ମହାରାଜ ଖାରବେଳ
ବାଜୁଥିଲେ କଳିଙ୍ଗର ରାଜଛତ୍ର ମେଲି ।
ବୌଦ୍ଧ ଧର୍ମ୍ମ ଶାସନ ବଦଳେ
ଜୈନ ସଂସ୍କୃତି ପ୍ରସାର ଲଭିଲା କଳିଙ୍ଗେ,
ରାଜ ପୋଷକତା ଥିଲେ ।
ରାଜତ୍ୱର ପଞ୍ଚମ ବରଷ ପରେ
କର ପଦାନତ
ଭାରତୀୟ ବୀର ନରପତି ଦଳେ
ଖାରବେଳ ଆରମ୍ଭିଲେ
ଯଜ୍ଞ ରାଜସୂୟ ।
ବହୁକାଳୁ ଯାହା
ଆଉ ଦେଖି ନାହୁଁ ଆଖି,
ଅବା ନ ଶୁଣିଛୁ କର୍ଣ୍ଣେ ।
ନବବଳ, ନବପ୍ରାଣ, ଅଭିନବ ଉନ୍ମାଦନା
ଖେଳିଗଲା କଳିଙ୍ଗର
ନଗର ପଲ୍ଲୀରେ ।
ମହାମେଘବାହନ ନାମରେ
ଭାରତର ଉତ୍ତର ଦକ୍ଷିଣାଞ୍ଚଳେ
ନିନାଦିଲା ବିଜୟ ନାଗରା

(ଦୃଶ୍ୟ ପରିବର୍ତ୍ତନ)



# —ଦ୍ୱାଦଶ—

ଦୃଶ୍ୟ—(ଶିବିର ଭିତରେ ଉପବିଷ୍ଟ ଖାରବଳ । ସନ୍ଧି-ବିଗ୍ରହ ତାଙ୍କୁ ଗୋଟିଏ ମାନଚିତ୍ର ଦେଖାଉଥିଲେ । ଅଳ୍ପକାଳ ନୀରବତା ପରେ, ସନ୍ଧି-ବିଗ୍ରହ ମାନଚିତ୍ରର ଗୋଟିଏ ସ୍ଥାନକୁ ଅଙ୍ଗୁଳି ନିର୍ଦ୍ଦେଶ କରି ଦେଖାଇଲେ)

ଖାରବଳ—କେବଳ ଏଇ ପଥଟି ନୁହେଁ ( ଅନ୍ୟ ଗୋଟିଏ ସ୍ଥାନ ଦେଖାଇ) ଏହା ମଧ୍ୟ ଯଥେଷ୍ଟ ଗୁରୁତ୍ୱପୂର୍ଣ୍ଣ ।

ସନ୍ଧିବିଗ୍ରହ—ସେହି ଅନୁମାନରେ ଆମର ଗଜବଳ ସେଠାକୁ ପଠାଇ ଦେଇଛୁ । ସେମାନେ ଶତ୍ରୁର ଗତିପଥ ଲକ୍ଷ୍ୟ କରି ପ୍ରସ୍ତୁତ ରହିଛନ୍ତି ।

ଖାରବଳ—ଉତ୍ତମ । ମଥୁରାରେ ଆଜି ଶତ୍ରୁ ପ୍ରବେଶର ଆଶଙ୍କା ନ ଥିଲେ ମଧ୍ୟ, ଏଡ଼େ ସହଜରେ ଯେ ଡିମେଟ୍ରିୟସ୍ ରକ୍ତ ଶୋଷଣର ଲୋଭ ପାଶୋରି ଦେବ, ଏପରି ଭାବି ନିଶ୍ଚିନ୍ତ ହେବା ଉଚିତ ନୁହେ । ତେଣୁ ତିନି ସହସ୍ର ଅଶ୍ୱାରୋହୀ ଗିରିପଥର ପର୍ଯ୍ୟବେକ୍ଷଣ ଲାଗି ଛାଉଣୀରୁ ଅବିଳମ୍ବେ ପଠାଇ ଦିଅନ୍ତୁ ।

ସନ୍ଧିବିଗ୍ରହ—ଯଥା ଆଜ୍ଞା ମହାରାଜ ।

(ଦୁଇ ଜଣ ସୈନିକ ଜଣେ ମଗଧର ଗୁପ୍ତଚରକୁ ବନ୍ଦୀକରି ନେଇ ଆସିଲେ)

ସୈନିକ—ମହାମେଘ ବାହନ ସମ୍ରାଟଙ୍କର ଜୟ ହେଉ ।

ଖାରବଳ—କି ସମ୍ବାଦ !

ସୈନିକ—ଅପରିଚିତ ଏହି ଲୋକଟି, ଆମର ଛାଉଣୀ ଭିତରେ ପ୍ରବେଶ କରିବାର ଦେଖାଗଲା । ସନ୍ଦେହ ହେଉଛି, ଏ ଜଣେ ଗୁପ୍ତଚର । ପଚାରିଲେ କୌଣସି ପରିଚୟ ନଦେଇ ମହାରାଜାଙ୍କର ସାକ୍ଷାତରେ ସବୁ ପ୍ରକାଶ କରିବାକୁ କହେ ।

ଖାରବଳ—(ଲୋକଟିକୁ ଆପାଦ ମସ୍ତକ ଚାହିଁ) ବନ୍ଧନ ଉନ୍ମୋଚନ କର ।

(ବନ୍ଧନ ଉନ୍ମୋଚିତ ହେଲା—ସୈନିକ ପ୍ରଣାମ କଲା)

ଖାରବଳ—ତୁମର ପରିଚୟ ।

ସୈନିକ—ମଗଧର ଜଣେ ଚର ।

ଖାରବଳ—(ହସି) ପୁଣି ମଗଧର ଚର ? କି ଉଦ୍ଦେଶ୍ୟରେ ?

ସୈନିକ—ମଗଧବାସୀ ଆତଙ୍କିତ, ଆସିଥିଲି ଶତ୍ରୁ ଶିବିରର ଗତିବିଧି......

ଖାରବଳ—ଉତ୍ତମ । କିନ୍ତୁ ମଗଧବାସୀ ବିଜେତା ପକ୍ଷରୁ କୌଣସି ଅତ୍ୟାଚାରର ସୂଚନା ପର୍ଯ୍ୟନ୍ତ ପାଇଛନ୍ତି କି ?

ସୈନିକ—ଏ ପର୍ଯ୍ୟନ୍ତ ପାଇ ନାହାନ୍ତି ସତ୍ୟ, ତଥାପି......

ଖାରବଳ—ତଥାପି କଳିଙ୍ଗ ସେମାନଙ୍କର ଶତ୍ରୁ । ମଗଧ-ବୀର ଅଶୋକଙ୍କର ଆଚରଣ ଅବଧି କଳିଙ୍ଗର ଅପାଶୋରି ହୋଇ ରହିଛି । ବୋଧହୁଏ ମଗଧବାସୀ ମନେ କରନ୍ତି ଯେ କଳିଙ୍ଗ ସେ ବ୍ୟବହାରର ପ୍ରତିଶୋଧ ନେବାକୁ ମଗଧ ବିଜୟ କରିଛି ।

ସୈନିକ—ଏ ଆଶଙ୍କା ତ ସ୍ୱାଭାବିକ ମହାରାଜ ।

ଖାରବଳ—ମୋର ମନେ ହୁଏ ମଗଧ-ରାଜ ପୁଷ୍ପ ମିତ୍ରଙ୍କର ଏ ଭ୍ରାନ୍ତ ଧାରଣା ପ୍ରଶଂସନୀୟ । ନୋହିଲେ ବିଦେଶୀ ଡେମେଟ୍ରିୟସଙ୍କୁ ନିମନ୍ତ୍ରଣ କରି, ସେ ପବିତ୍ର ଭାରତ ଭୂମିରେ ରାଜତ୍ୱର ସୁଯୋଗ ଦେଇ ନ ଥାନ୍ତେ । ଗୁପ୍ତଚର ! ମଗଧବାସୀଙ୍କୁ ଜଣାଇ ଦେବ,—ଦିଗ୍ବିଜୟୀ ଖାରବଳ ଦେହରେ ଯେଉଁ କଳିଙ୍ଗ ରକ୍ତ ପ୍ରବାହିତ—ତାର ଜନ୍ମ ଭାରତ ଭୂମି । ଖାରବଳ ପ୍ରଥମେ ଭାରତୀୟ—ପରେ ସେ କଳିଙ୍ଗର ଅଧିବାସୀ । ବିଜାତୀୟ ଗ୍ରୀକ ଶକ୍ତି-ସିଂହ ସାରା ଭାରତ ଗ୍ରାସ କରିବାକୁ ଲେଲିହାନ ଜିହ୍ୱା ବିସ୍ତାର କରି ସାରିଥିଲା । ଭାରତ ଜନନୀର ରାଜମୁକୁଟରେ କାଳ-ଫଣୀର ମଣିର ଝଲକ ଅନୁମାନ କରିପାରି ନାହାନ୍ତି ପୁଷ୍ପମିତ୍ର ! ସେ ରାଜ କ୍ଷମତାର ମୋହରେ ପାଶୋରି ଦେଇଥିଲେ ଯେ ଅଦୂର ଭବିଷ୍ୟତରେ ମଗଧର ଦୁର୍ଗ ପ୍ରାଚୀର ଗ୍ରୀକ୍‌ବୀର ଡେମେଟ୍ରିୟସଙ୍କର ବିଜୟ ପଦାଘାତରେ ଧୂଳିସାତ୍ ହୋଇ ଥାଆନ୍ତା । ଫେରି ଯାଅ ଚର, ତୁମେ ମୁକ୍ତ । ମଗଧବାସୀଙ୍କୁ ଜଣାଇ ଦିଅ, ଖାରବଳ ଗ୍ରୀକ୍ ଶକ୍ତିର ଶତ୍ରୁ—ମଗଧର ନୁହେଁ ।

ଚର—ମହାରାଜାଙ୍କର ଜୟହେଉ । (ପ୍ରଣାମ କରି ଚାଲିଗଲା, ପ୍ରହରୀ ମଧ୍ୟ ଚାଲିଗଲେ)

ସନ୍ଧି-ବିଗ୍ରହ—ଅଦ୍ଭୁତ ଏମାନଙ୍କର ଧାରଣା । ପୁଷ୍ପମିତ୍ର ଏ ପର୍ଯ୍ୟନ୍ତ ମଧ୍ୟ କଳିଙ୍ଗ ପ୍ରତି ଏହିମତ ପୋଷଣ କରନ୍ତି ?

ଖାରବଳ—ଚର ମୁଖହିଁ ତାର ପ୍ରମାଣ ।

ସନ୍ଧି-ବିଗ୍ରହ—ଭାରତୀୟ ସୁଖ ସମ୍ମାନରେ ଆଘାତ ଦେବା ଭଳି ଶିକ୍ଷା ଦୀକ୍ଷା ତ କଳିଙ୍ଗ-ରକ୍ତ-ସମ୍ମତ ନୁହେଁ ।

ଖାରବେଳ—ମଗଧରାଜ ଗ୍ରୀକ୍ ଶକ୍ତିର ସ୍ତାବକ । ତେଣୁ ସେ ଭାରତୀୟ ସଂସ୍କୃତ, ଜନ୍ମଭୂମିର ମମତା ଏଡ଼ାଇ ଦେଇଛନ୍ତି । ଅଦୂର ଆକାଶରେ ବିଦେଶୀର ରକ୍ତ ତାରକା ଫୁଟିବାକୁ ଆଉ ବିଳମ୍ବ ନଥିଲା ।

ସନ୍ଧି-ବିଗ୍ରହ—ଡିମେଟ୍ରିୟସ କିନ୍ତୁ ଚତୁର । ରାଜଗୃହ ଅବା ଗୋରଥ ଗିରି ପତନ ପରେ ସେ କଳିଙ୍ଗ ସେନାର ବଳ କଳନା କରି, ଆପଣା ଜୀବନ ବଞ୍ଚାଇ, ବହୁ ଦୂରକୁ ଚାଲି ଯାଇଛନ୍ତି । ଅକାରଣ ଜନ, ମାନ, ଜୀବନ ଉତ୍ସର୍ଗ ନ କରି ସେ ସୁଦୂର ଉତ୍ତରକୁ........

ଖାରବେଳ—ତଥାପି ନିଶ୍ଚିନ୍ତ ହୁଅନାହିଁ ସନ୍ଧି ବିଗ୍ରହ । ପ୍ରତ୍ୟେକ ଗିରି ପଥରେ ସଜାଗ ସେନା ପ୍ରସ୍ତୁତ କରି ରଖ । ପୁଷ୍ପମିତ୍ର କଳିଙ୍ଗ ସୌଜନ୍ୟତାର ମୂଲ୍ୟ ଅବଧି ବୁଝିପାରି ନାହାନ୍ତି ବୋଲି ମନେ ହୁଏ ।

ସନ୍ଧି-ବିଗ୍ରହ—ଦାକ୍ଷିଣାତ୍ୟରେ ସାତକର୍ଣ୍ଣୀ, ମୂଷିକ, ମହାଭୋଜ, ରଷ୍ଟିକ, ଭୋଜକ ପ୍ରଭୃତି ରାଜବଂଶର ପରାକ୍ରମ ଜଣା ନୁହେଁ । ପରାଜୟ ସ୍ୱୀକାର ପରେ ସେମାନେ ରାଜସୂୟ ଯଜ୍ଞରେ ଯୋଗ ଦେଇଥିଲେ । କେବଳ ମଗଧ, ନିଜ ବାହୁବଳର ପ୍ରୌଢ଼ି ପ୍ରଦର୍ଶନ କରିଥିଲେ । ବାସ୍ତବରେ କଳିଙ୍ଗବାସୀ ଅବଧି ମଧ୍ୟ ଅଶୋକଙ୍କର ନିର୍ମମ ଆକ୍ରମଣ ପାଶୋରି ନାହାନ୍ତି ମହାରାଜ ।

ତେଣୁ ମଗଧ ଅଭିଯାନ ସେମାନଙ୍କ ବୀର ଜୀବନର ଏକମାତ୍ର କାମ୍ୟଥିଲା ।

ଖାରବେଳ—କିନ୍ତୁ ସନ୍ଧିବିଗ୍ରହ । ବହିଃଶତ୍ରୁର ଧ୍ୱଂସ ସାଧନ ମୋର ପ୍ରଧାନ ଲକ୍ଷ୍ୟ । ଗ୍ରୀକ୍ ଶକ୍ତି ଆର୍ଯ୍ୟାବର୍ତ୍ତ ଗ୍ରାସକରିବାକୁ ବସିଥିଲା । ତେଣୁ ଡମେଟ୍ରିୟସ ହିଁ ମୋର ପ୍ରଧାନ ଓ ପ୍ରଥମ ।

ନିଯୋଗ—(ସମ୍ମାନ ପ୍ରଦର୍ଶନ ପୂର୍ବକ) ମହାମେଘବାହନ ସମ୍ରାଟଙ୍କର ଜୟହେଉ ।

ଖାରବେଳ—କି ସମ୍ବାଦ ନିଯୋଗ !

ନିଯୋଗ—ଦେଢ଼ଶହ ଜୈନ ସନ୍ନ୍ୟାସୀ—

ଖାରବେଳ—(ଆନନ୍ଦରେ) ଓଃ ! ଆସିଗଲେଣି ସନ୍ନ୍ୟାସୀମାନେ । ଯାଅ, ପ୍ରଥମେ ସେମାନଙ୍କର ସତ୍କାରର ବ୍ୟବସ୍ଥା କରାଅ । ପଥଶ୍ରାନ୍ତ ସେମାନେ । କ୍ଳାନ୍ତି ଦୂର କରନ୍ତୁ । ମୁଁ ଶୀଘ୍ର ସାକ୍ଷାତ କରିବି ।

ନିଯୋଗ—ଯଥା ଆଜ୍ଞା ମହାରାଜ ! (ପୁନଃ ସମ୍ମାନ ପ୍ରଦର୍ଶନ କରି ପ୍ରସ୍ଥାନ)

ଖାରବେଳ—ସନ୍ଧି-ବିଗ୍ରହ ! ମଗଧ କଳିଙ୍ଗର ଜାତି-ଶତ୍ରୁ । ସେ ପରାଜୟ ସ୍ୱୀକାର କରିଛନ୍ତି । ମୌର୍ଯ୍ୟବଂଶ ଆଜି ସ୍ୱର୍ଗରେ ଥାଇ ଦେଖୁଥିବେ ବ୍ରାହ୍ମଣ ବୃହସ୍ପତି ମିତ୍ର ତାଙ୍କ ସିଂହାସନର ମର୍ଯ୍ୟାଦା ରକ୍ଷି ପାରିଲେ ନାହିଁ । କଳିଙ୍ଗ ସିଂହ ବିକ୍ରମରେ ପ୍ରାଚୀର ତୋରଣ ଧୂଳିସାତ୍ କରି ପାରିଛନ୍ତି । ଏ ଆନନ୍ଦରୁ ବଳି ମୋର ପରମ ସୌଭାଗ୍ୟ ଯେ ପାଟଳୀ ପୁରରୁ କଳିଙ୍ଗକୁ ପୁଣି ମୁଁ ମହାସମାରୋହରେ କଳିଙ୍ଗ ଜିନ ମୂର୍ତ୍ତି ନେଇଯାଇ ପାରିବି ।

---

ସନ୍ଧି-ବିଗ୍ରହ—ଉତ୍ସବର ଯଥା-ବ୍ୟବସ୍ଥା କରାଯାଇଛି ମହାରାଜ । ଜୈନ ସନ୍ନ୍ୟାସୀମାନେ ତ ଉପସ୍ଥିତ ହେଲେଣି । ହାତିଗୁମ୍ଫା ଅମରାକ୍ଷରରେ ମହାରାଜଙ୍କର ଏ କୀର୍ତ୍ତି ଯୁଗ ଯୁଗ ଲାଗି ଲିପିବଦ୍ଧ କରି ରଖିବ ।

(ନେପଥ୍ୟରୁ—ମହାମେଘ ବାହନ ସମ୍ରାଟ ଖାରବେଳଙ୍କର ଜୟ—ଆଠାର ଉଚ୍ଚାରିତ ହେଲା)

ଖାରବେଳ—କିଏ ଏମାନେ ସନ୍ଧି-ବିଗ୍ରହ !

(ସନ୍ଧି-ବିଗ୍ରହ ଉଠିଗଲେ ବାହାରକୁ)

(ଖାରବେଳ ଆସନ ତ୍ୟାଗ କରି ପଦ ଚାରଣ କଲେ । ଇତି ମଧ୍ୟରେ ସନ୍ଧି-ବିଗ୍ରହ ଫେରି ଆସିଲେ)

ସନ୍ଧି-ବିଗ୍ରହ—ବନ୍ଦୀ ପୁଷ୍ପ ମିତ୍ର ।

ଖାରବେଳ—ସନ୍ଧି-ବିଗ୍ରହ !—ଖାରବେଳ ମଗଧର ଚଣ୍ଡାଶୋକ ନୁହେଁ । ବିଜିତ ପ୍ରତି ଯଥା ଯୋଗ୍ୟ ମହତ୍ତ୍ୱ ପ୍ରଦର୍ଶନ କଳିଙ୍ଗର ସହଜାତ ଧର୍ମ୍ମ । ମଗଧ ଆଜି କଳିଙ୍ଗର ବିଜିତ ରାଜ୍ୟ—ପୁଷ୍ପମିତ୍ର ବର୍ତ୍ତମାନ କଳିଙ୍ଗର ଅତିଥି । ପୁଣି ବ୍ରାହ୍ମଣ ସେ । ରାଜ ବନ୍ଧୁରେ ତାଙ୍କୁ ଶିବିରକୁ ଆଣନ୍ତୁ ଆପଣ । (ଆସନ ଗ୍ରହଣ କଲେ)

ସନ୍ଧି-ବିଗ୍ରହ—ମହାମହିମ ମହାମେଘ ବାହନ ସମ୍ରାଟ । ଆଜି ବୁଝିଲି, ଯାବତ୍ ଚନ୍ଦ୍ରାର୍କେ କଳିଙ୍ଗ ଭୂମିର ମହିମା ଅପାଶୋରି ଦେବତା । ଧନ୍ୟ ମହାରାଜଙ୍କ ବିଚାର ।

(ପ୍ରସ୍ଥାନ କଲେ)

---

ଖାରବେଳ—(ତନ୍ଦ୍ରାଛାଡ଼ି ମାରିଲେ—ନିୟୋଗ ପ୍ରବେଶ କରି ଅଭିବାଦନ କଲା) ଜୈନ ସନ୍ନ୍ୟାସୀମାନଙ୍କର ସତ୍କାରର ସମସ୍ତ ବ୍ୟବସ୍ଥା ହୋଇ ଗଲାଣି ? ବୃହସ୍ପତି ସମ୍ବାଦ ଦିଅ ।

ନିୟୋଗ—ମହାରାଜ ! (ପ୍ରସ୍ଥାନ କଲା)

(ସନ୍ଧି-ବିଗ୍ରହିଙ୍କ ସହିତ ପୁଷ୍ପମିତ୍ର ପ୍ରବେଶ କଲେ—ଖାରବେଳ ଆସନରୁ ଉଠିପଡ଼ି କହିଲେ)

ଖାରବେଳ—ଆସନ୍ତୁ, ଆସନ ଗ୍ରହଣ କରନ୍ତୁ ମଗଧ ରାଜ !

(ଉଭୟେ ଆସନ ଗ୍ରହଣ କଲେ)

ପୁଷ୍ପମିତ୍ର—ସମ୍ରାଟ ଖାରବେଳ ! ଲୋକ ମୁଖରେ ଆପଣଙ୍କର ଖ୍ୟାତି ଶୁଣି ଥିଲି । ମଗଧ ଆକ୍ରମଣ ମୋର ସେ ଚକ୍ଷୁ କର୍ଣ୍ଣର ବିବାଦ ଭଞ୍ଜନ କରି ଦେଇଛି । କଳିଙ୍ଗ ସହିତ ମଗଧର ଶତ୍ରୁତା ସ୍ମରଣରେ ମଗଧବାସୀ ପ୍ରମାଦ ଗଣୁ ଥିଲେ । କିନ୍ତୁ ଆଜି କୋଟି କଣ୍ଠରେ ମହାରାଜଙ୍କର ଜୟଧ୍ୱନି ଉଚ୍ଛୁଳି ଉଠୁଛି । ବିଶେଷତଃ ବୌଦ୍ଧ ଓ ବ୍ରାହ୍ମଣମାନେ·········

ଖାରବେଳ—ଧର୍ମ୍ମ ହେତୁ କଳିଙ୍ଗ ମଗଧ ଆକ୍ରମଣ କରି ନିଜର କ୍ଷୁଦ୍ରତ୍ୱ ପ୍ରକାଶ କରି ପାରିବ ନାହିଁ । ଆପଣ ବ୍ରାହ୍ମଣ—ମୁଁ ଜୈନ ଧର୍ମର ସେବକ । ମାତ୍ର ମନୁଷ୍ୟ ତ ସମସ୍ତେ । ଅହିଂସ ନୀତି ସବୁ ଧର୍ମ୍ମର ମୂଳ ଲକ୍ଷ୍ୟ । ପ୍ରଜାପୀଡ଼ନ ରାଜ-ଧର୍ମ୍ମ ନୁହେ । କଳିଙ୍ଗ ସିଂହାସନର ସମ୍ମାନ ରକ୍ଷା ହିଁ କଳିଙ୍ଗ ରାଜଛତ୍ରର ଆଶା ।

ପୁଷ୍ପମିତ୍ର—ମହାରାଜଙ୍କ ବ୍ୟବହାରରେ ପୁଷ୍ପମିତ୍ର ଲଜ୍ଜା ଅନୁଭବ କରୁଛି ସମ୍ରାଟ । ମୁଁ କ୍ଷମାଭିକ୍ଷାର୍ଥୀ ।

---

ଖାରବେଳ—ଅହୋ ! ବ୍ରାହ୍ମଣ ଆପଣ ! ଏକଥା କାହିଁକି ? ପୂର୍ବେ ମଗଧର ନନ୍ଦ ବଂଶ କଳିଙ୍ଗ-ଜିନ ମୂର୍ତ୍ତିଙ୍କୁ ବଳପୂର୍ବକ ଘେନି ଆସିଥିଲା । ମୁଁ ସେହି ମୂର୍ତ୍ତିଙ୍କୁ ମାତ୍ର ଫେରାଇ ନେବି । ସେହି ହେବେ ଏଥର କଳିଙ୍ଗ ବିଜୟର ମହାମୂଲ୍ୟ ଉପଢୌକନ ଲାଭ । ଦେବ ମୂର୍ତ୍ତିଙ୍କର ପୁନଃ ପ୍ରତିଷ୍ଠା ଉତ୍ସବରେ ଯୋଗଦାନ ନିମିତ୍ତ ଆପଣଙ୍କୁ ମୋର ସାଦର ନିମନ୍ତ୍ରଣ ରହିଲା । ମଗଧ ସିଂହାସନରୁ ଆପଣଙ୍କୁ ବିଚ୍ୟୁତ କରିବା ମୋର ମଗଧ ବିଜୟର ଲକ୍ଷ୍ୟ ନୁହେଁ ।

ପୁଷ୍ପମିତ୍ର—ସମ୍ରାଟଙ୍କର ଜୟ ହେଉ ।

ଖାରବେଳ—ସନ୍ଧି-ବିଗ୍ରହ ! ମଗଧରାଜଙ୍କୁ ଯଥାବିଧି ବାହୁଡ଼ି ଯିବାର ବ୍ୟବସ୍ଥା କରି ଦିଅନ୍ତୁ । ଆସନ୍ତୁ ମଗଧ-ରାଜ ! ମୋର ନିମନ୍ତ୍ରଣ ରକ୍ଷା କଲେ ସୁଖୀ ହେବି ।

(ଆସନ ତ୍ୟାଗ କଲେ)

ପୁଷ୍ପମିତ୍ର—(ଉଠି) ନିମନ୍ତ୍ରଣ ତୁହେ—ଏହା ମୋର ପରମ ସୌଭାଗ୍ୟ ! ଯଥା କାଳରେ ଉପସ୍ଥିତ ହେବି ।

ସମ୍ରାଟଙ୍କର ଜୟ ହେଉ ।

(ସନ୍ଧି-ବିଗ୍ରହ ପଥ ପ୍ରଦର୍ଶକ ହେଲେ, ପୁଷ୍ପମିତ୍ର ପ୍ରସ୍ଥାନୋଦ୍ୟତ)

(ଦୃଶ୍ୟ ପରିବର୍ତ୍ତନ)

---

## —ତ୍ରୟୋଦଶ—

ଦୃଶ୍ୟ:–(ଧଳାପରଦା ପଡ଼ନ୍ତୁ—ପ୍ରବେଶ କଲେ କଳ୍ପପ୍ରାଣ)

କଳ୍ପପ୍ରାଣ—ବିଜୟ ବାଦ୍ୟୁଡ଼ା ।

ମଗଧ-ବିଜୟ ବାଦ୍ୟ, ପଲ୍ଲକରେ
ହେଲା ପ୍ରସ୍ଫୁରିତ ମୁଖେ ମୁଖେ ।
ଅକାଳେ ବସନ୍ତ ସତେ ହସିଲା କଳିଙ୍ଗେ ।
ଅପାଶୋର୍ ତୀବ୍ର ଅନ୍ତର୍ଦାହ,
ଏତେ ଦିନେ ପ୍ରଶମିଲା ଅବା କଳିଙ୍ଗ ବକ୍ଷରୁ ।
ଲାଗିଲା ଉତ୍ସବ ଆୟୋଜନ ।
ଚର୍ବ୍ୟ, ଚୋଷ୍ୟ, ଲେହ୍ୟ, ପେୟ
ଭୂରି ଭୋଜନରେ ତୃପ୍ତ ହେଲେ ଦେଶବାସୀ ।
ଶୁକ୍ଳବସ୍ତ୍ର ହେଲା ବିତରିତ
ଜୈନ ସନ୍ନ୍ୟାସୀଙ୍କୁ ।
ଧର୍ମ୍ମ ନିର୍ବିଘ୍ନରେ
ବୌଦ୍ଧ, ବ୍ରାହ୍ମଣ ନଗଣି
ଦାନକଲେ ନୃପ ଖାରବେଳ ।
ନୃତ୍ୟ, ଗୀତ, ସଭା, ମହୋତ୍ସବେ
ମହାନନ୍ଦେ ଭାସିଲା କଳିଙ୍ଗ ।
ରାଜସଭା ଭରିଗଲା ଜନ ସମାଗମେ ।
ଶିଶୁ ବୃଦ୍ଧ ଯୁବକ ଯୁବତୀ

ଉଦ୍‌ଗ୍ରୀବ ନୟନେ
ରହିଲେ ଅନାଇଁ—
କେବେଠବେଳେ ବାଜେ ହେବେ
ପୂଜ୍ୟ ଖାରବେଳ,
ଅଳଙ୍କବେ ରାଜ ସିଂହାସନ ।
ଏକାଳେ ପ୍ରବେଶି ରାଜଭଟ୍ଟ
ଜଣାଏଁ ସମ୍ବାଦଃ—
(ମଞ୍ଚ ଅନ୍ଧାରିତ ହେଲା)

(ଦୃଶ୍ୟ ପରିବର୍ତ୍ତନ)

---

## —ଚତୁର୍ଦ୍ଦଶ—

ଦୃଶ୍ୟଃ—(କଳିଙ୍ଗର ଦରବାର—ସୁସଜ୍ଜିତ ସିଂହାସନ—ଉପବିଷ୍ଟ ମହାମନ୍ତ୍ରୀ ଇତ୍ୟାଦି ରାଜ କର୍ମଚାରୀ ଓ ବିଶିଷ୍ଟ ନାଗରିକଗଣ । ପ୍ରବେଶକଲା ରାଜଭଟ୍ଟ । ଗୋଳମାଳ ବନ୍ଦ ହୋଇଗଲା । )

ରାଜଭଟ୍ଟ—ସାବଧାନ । ସାବଧାନ । ସାବଧାନ ।
ଜୟତୁ ଜୟତୁ ଚକ୍ରବର୍ତ୍ତୀ ମହାମେଘ ବାହନ,
ଦୁଷ୍ଟ ଦଳନ, ସନ୍ଥ ପାଳନ, ଅରି ମର୍ଦ୍ଦନ, ତେଜ ବର୍ଦ୍ଧନ
ଚେଦୀ ବଂଶ ଚନ୍ଦ୍ର ଅରୁଣ,

ସକଳ ଧର୍ମ୍ମ ସମ ଦର୍ଶନ
କଳିଙ୍ଗ ମଧ୍ଯ ଶିର୍-ମଣ୍ଡନ—
ବିଜୟୀ ଶ୍ରୀ ଶ୍ରୀ ଶ୍ରୀ ମହାମହିମ ସମ୍ରାଟ ଖାରବେଳ—
(ତୂରୀ ବାଜି ଉଠିଲା ତତ୍ପରେ । ପରେ ପରେ ସଭାପ୍ରବେଶ
କଲେ ସମ୍ରାଟ ଖାରବେଳ ଓ କେତେକ ଜୈନ ସନ୍ନ୍ୟାସୀ ।
ସଭାରୁ ସମ୍ମାନ ପ୍ରଦର୍ଶନ କରି ସମସ୍ତେ ଆସନ ଗ୍ରହଣ କଲେ ।
ଭାଟର ବିଜ ପ୍ରଶସ୍ତି ଗାୟନ ଓ ନର୍ତ୍ତକୀର ନୃତ୍ୟାରମ୍ଭ)

(ଦୃଶ୍ୟ ପରିବର୍ତ୍ତନ)

---

## —ପଞ୍ଚଦଶ—

କଲ୍ପ-ପ୍ରାଣ—

ନା, ନା, ଏତକରେ ଶେଷ ନୁହେ—
ଭାଗ୍ୟ ଲକ୍ଷ୍ମୀ ଗନ୍ତାଘର ଦାନ ।
ଅର୍ଯ୍ୟାବର୍ତ୍ତେ,
ମଗଧ ବିଜୟୀ ଖାରବେଳ ପଦେ,
ତୁଳା ଦଣ୍ଡେ ତଉଲ ସମାନ
ଦକ୍ଷିଣାପଥର ଶିରୀ
ଲୁଟିଲା ସହଜେ ।
ପାଣ୍ଡ୍ୟ ରାଜ୍ୟ ନରପତିଗଣ

---

ମଣି ରତ୍ନ ଅଳଙ୍କାରେ ଶୃଙ୍ଗାର ସଜାଡ଼ି
ଭେଟି ଦେଲେ ଆସି ରାଜ ପଦେ
ସ୍ୱୀକାର କରିଲେ ସର୍ବେ କଳିଙ୍ଗ ବଶ୍ୟତା ।
ନଭ ମଧ୍ୟ ମଣି ରୂପେ
ଝଲସିଲା କଳିଙ୍ଗ-ନଗର ରାଜଧାନୀ
ମଥୁରାରୁ କୁମାରିକା ରାଜତ୍ୱ ବିସ୍ତାର ।
ପ୍ରଣମିଲା ଏଥି ଠାବେ ଦିଗ୍‌ବିଜୟୀ ହସ୍ତୀ
ରାଜତ୍ୱର ତ୍ରୟୋଦଶ ଅବ୍ଦେ ।
ରାଜଦଣ୍ଡ ଟଳିଗଲା ଧର୍ମ୍ମ ଧ୍ୱଜା ଘେନି,
ମାତ୍ର ବରଷକ ମଧ୍ୟେ ।
ଖଣ୍ଡଗିରି, କୁମାରୀ ପର୍ବତ;—
ଉଦୟଗିରି ନାମରେ ପ୍ରଖ୍ୟାତ ଯାହାର —
ହୋଇଲା ସରଗ ସୀମା, ଧର୍ମ୍ମ ଅଧିକାରେ ।
ମହା ସମାରୋହେ—
ମହାବୀର ଜୈନ ମୂର୍ତ୍ତି ହେଲେ ପ୍ରତିଷ୍ଠିତ ।
ଅଗଣିତ ସ୍ତମ୍ଭ ଘେନି
ଏକଶତ ସପ୍ତଦଶ ଗୁମ୍ଫା,
କକ୍ଷ ବେଦୀ, ଅଳିନ୍ଦ ତୋରଣ
ନିର୍ମିତ ହେଲା ବରଷକେ ।
ବେନି ଗିରି ଧର୍ମ୍ମ ପୀଠେ ହେଲା ପରିଣତ ।
କାହିଁ ପଥ, ଜଳାଶୟ, କାହିଁ ଗୃହ ହର୍ମ୍ମ୍ୟ
କେତେ ମତ୍ନେ ଶୋଭିଲା କଳିଙ୍ଗ ।

ଉଦୟଗିରି ରାଜାଙ୍କ ରାଜ ତପୋବନେ ।
ଶ୍ରମଣ ନିବାସ ହେଲା ହାତୀ ଗୁମ୍ଫାସ୍ଥଳୀ,
ବହୁ ଚୈତ୍ୟେ ଶୋଭିଲା ଏ ଦେଶ ।
ଶାନ୍ତି ସୁଖ ରାଜ୍ୟ କଳିଙ୍ଗେ ।
କଳିଙ୍ଗ ବୋଇତଅଳେ,
ନିର୍ଭିକ ଚିତ୍ତରେ
ଉଡ଼ାଇ ଚରାଳ, ପାଲ୍ କଳିଙ୍ଗ ବୋଇତେ
ସିନ୍ଧୁ ଲଙ୍ଘି,
ଗଲେ ଦୂର ଦେଶେ
ପତି ସୋହାଗିନୀ
ସତୀ ସାଧବାଣୀ ବଧୂ
ବନ୍ଦିଲେ ବୋଇତ ମଙ୍ଗ
ଦେଇ ହୁଳହୁଳୀ—

(ଦୃଶ୍ୟ ପରିବର୍ତ୍ତନ)

---

## —ଷୋଡ଼ଶ—

(ଦୃଶ୍ୟ :—ନଦୀ ତୀର, ବୋଇତର ଗୋଟିଏ ମଙ୍ଗ ଦିଶୁଛି । ଦୂରରୁ ହୁଳହୁଳୀ ଶୁଭୁଛି । ଜଣେ ସାଧବ ଯୁବତୀ ବୋଇତ ମଙ୍ଗରେ ଫୁଲ ଇତ୍ୟାଦି ଦେଉଥିଲେ ଗୁଙ୍ଗୁଡ଼ିରୁ । ଅନ୍ୟ ଦିଗରୁ ଆସୁଥିଲେ ରାମେଶ୍ୱର । ସେ ଜଣେ ସାଧବ ପୁଅ । ବେଶ ସାଧବ ପରି । ହାତରେ ଭୋଗ ଥାଳି ।)

ରାମେଶ୍ୱର—(ସ୍ତ୍ରୀ ଲୋକଟିକୁ ଦେଖି, ଅସୁ ଅସୁ ପଛାଇ) ମ, ମ, ମ, ମ । (ସେ ଠିଆ ହୋଇଗଲେ)

ସାଧବ ବୋହୂ—(ଫୁଲ ଦେଇ ବାରମ୍ବାର ମୁଣ୍ଡିଆ ମାରିଲେ) ମା, ସର୍ବମଙ୍ଗଳା ।

ରାମେଶ୍ୱର—ଏ କିଏ ନୂଆ ଭକ୍ତ କି ! କଅଣ ନିଶ୍ଚେଳା ଭେଟି ମନାସି ବୋଇତ ମଙ୍ଗକୁ ଆସିଥିଲ କି ?

ସାଧବ ବୋହୂ—(ଫେରି ଚାହିଁ, ଲଜ କରି, ଟିକିଏ ହସି) ଅହା ! ତେମେ ଯୋଉ କଥା କହ !

ରାମେଶ୍ୱର—(ହସି) ମୋ କଥା ! ଏ କଥା ପଦକ ପରା ଘିଅ ପଦକ । ତମ ମନ ଭିତର ଖଣି ଖୋଲି ପଦାରେ ଜକାଇ ଦେଲି । ଅଛୁର ପୁଣି ? .........

ସାଧବ ବୋହୂ—ହଁ, ସବୁଙ୍କ ପ୍ରଚ୍ଛପଟିଏ । ବୃହସ୍ପତିଙ୍କ ସାନ ଭାଇ ନା ବଡ଼ ଭାଇମ ?

ରାମେଶ୍ୱର—ବୃହସ୍ପତିଙ୍କ ଭାଇ ହେଇ ଜନ୍ମ ହୋଇ ଥାଅନ୍ତି ଯେ ନୂଆ ଭକ୍ତ । ମନ ହେଲା ନାହିଁ ।

ଭାଉଜ—ମନ ହେଲା ନାହିଁ ? କାହିଁକି ମ ?

ରାମେଶ୍ୱର—ତମ ପରି ସରଗ ଅପ୍ସରା ନୂଆ ଭାଉଜ ମିଳନ୍ତେ ନାହିଁ ବୋଲି ।

ଭାଉଜ—ସତେ ? ମୋର ପାଇଁ ତେବେ ଅଟକି ଗଲ ?

ରାମେଶ୍ୱର—ହଁ, ଠି'କ୍ ଏଠି ଯେମିତି ଅଟକି ଯାଇଛି । ଘରେ ଯେବେ ପଦେ କଥା ଆସି ଥାଆନ୍ତା, ମୁଁ କେବେଁ ଆସି ନଥାନ୍ତି ନଈ କୂଳକୁ ବୋଲି ।

ଭାଉଜ—କଉଣି କଥା ଆସି ଥାଆନ୍ତା ମ ?

ରାମେଶ୍ୱର—ଭାଇଙ୍କ ସାଙ୍ଗେ ନାହେଲା ଭେଟକୁ ଆସିବ—ଖାଲି ଏତିକି ଯେବେ……

ଭାଉଜ—ଆଉ ? ମୁଁ ତ ଖାଲି ସେଇଆ ମନାସି ଆସିଚି !

ରାମେଶ୍ୱର—ହଉ, କଥାବଟି ଦେଖି, ବୋଇତ ବନ୍ଧାଣି ହେବ, ଭାଇ ଯିବେ ବିଦେଶ । ଘରୁ ସେ ଅନୁକୂଳ କରି ଦାଉଁ ଦର୍ଶନ କରି ଆସୁ ଆସୁ, ତମେ ଅଗଭର ହେଇ ଆସିଚ ଆଉ କାହିଁକି ?

ଭାଉଜ—ହଁ, ମୋର ତ ଖାଲି—

ରାମେଶ୍ୱର—ଥାଉ ମ, ଥାଉ । ସେତିକି କଥା । ତଣ୍ଟିରେ ଢୋକ ଅଟକି ଯାଉ ନାହିଁ । ଆସ ଆସ, ମଙ୍ଗ ଧରୁ ବେଗେ ଉପରକୁ ଆସ । ସମସ୍ତେ ଆସୁଛନ୍ତି । ମନ ପୂରେଇ ଦେଖି ମନକଲେ ଆଉ ଲୁଗୁ ଦେଇ ବିଦା ।

ଭାଉଜ—(ବୋଇତ ପାଖରୁ ଉପରକୁ ଆସି) ଯା, ଯା କୋଉ ଧନଠୁଁ ଏମିତି ମିଛ କଥା ଶିଖିଲଣି ମ ?

ରାମେଶ୍ୱର—ମିଛ ମୁଁ କହୁ ନାହିଁ କି କହେଁ ନାହିଁ । ଘର ବିଦେଶ ଯିବେ । ବାହୁଡ଼ିବାକୁ ଛ'ମାସ ବରଷେ ଯାଏ । କିଏ ଣ ପାଖ ଅଖ ବାଟ ହେଉଛି ? ବାଲିଦ୍ୱୀପ—କାହିଁ କେଉଁଠି ! ଏତେ ଦିନ ଘୁଡ଼ ବାଡ଼ ! ଆସି ପୁରେଇ ଦେଖିବା କଥା—

(ନେପଥ୍ୟରେ ହୁଳହୁଳୀ ଶୁଭିଲା)

ଭଜନ—ଥାଉ, ଥାଉ ତମ ଟାହୁଲି । ଉଠ, ଘୁଞ୍ଚ ବାଟରୁ । ଆସିଲେଣି ସବୁ ।

ରାମେଶ୍ୱର—(ଅଡ଼େଇ ହୋଇ) ମୁଁ ତ ବସିଲ ପାଶୋଇ ଯାଉଛୁ । ହାତରେ ପରା ମୋର ବୋଇତ ବନ୍ଦାଣ ସାମଗ୍ରି । ଆରେ ! ହଁ ତ । ଭଲ ମନେ ପଡ଼ିଲା । ବନ୍ଦାଣ କରିବ କିଏ ? ତମେ ଯିବ କୁଆଡ଼େ ଭଜନ ! ଦୀପ ହେଉଛି ପରା ଜଳେଇ ଅଣିଛ ଘର ଠୁଁ । ଯା ନାଇଁ, ଯା ନାଇଁ ।

ଭଜନ—ମଲା । ଆଉ ସଭିଏଁ କିଏଣ ଆସିବେ ନାହିଁ ଯେ ମୋଠି ନାଗ ଲାଗିଛି ?

ରାମେଶ୍ୱର—ନାଗ—ଲାଗିବା ଥାନରେ ଲାଗେ । ଏ କଥା କିଏଣ ନୂଆ ଜାଣିଲ ? ନିଅ ଦୀପ ଧର (ଦୀପ ବଢ଼ାଇ ଦେଲା) (ସାଧବ ଓ କେତେ ଜଣ ସ୍ତ୍ରୀ ପୁରୁଷ ଆସିଲେ ହୁଳହୁଳୀ ମଧ୍ୟରେ । ସେମାନେ ବୋଇତ ପାଖକୁ ଗଲେ । ବୋଇତକୁ ଫୁଲ ଚନ୍ଦନ ଦେଇ ବନ୍ଦାଇଲେ, ନଡ଼ିଆ ଭୋଗ ଦେଲେ । ସ୍ତ୍ରୀ ପୁରୁଷ ବନ୍ଦନା ଗୀତ ଗାଇଲେ ।)

(ଗୀତ)

ଜୟତୁ ମଙ୍ଗଳା ମାଗୋ, ଜୟ ଭଗବତ !
ଅଥଳ ଅକୂଳେ ସାହା ତୁହି ଦୟାବତ !
ଲଙ୍ଘି, ସକଳ ଦୁର୍ଗତ
ବୋଇତ ବାହୁଡ଼ୁ ଶୁଭେ ଘେନ ଏ ମିନତ । ୧ ।

( ଗୀତ ମଧ୍ୟରେ ସାଧବ ଓ ମଙ୍ଗୁଆଳମାନେ ବୋଇତକୁ ଗଲେ । ଅନ୍ୟ ସମସ୍ତେ ବୋଇତ ଭସାଇ ଭସାଇ ଗୀତ ଗାଇ ଥାଅନ୍ତି । )

ବ୍ରଷମ ସଙ୍କଟ ସିନ୍ଧୁ ଲହର ପହଁର
ଭ୍ରସିଅସୁ ଏ ବୋଇତ ଖିରେ ପାଲ ତୋଳି,
ମାଗୋ, ଲକ୍ଷ୍ମୀ ସାମନ୍ତାଣୀ
ସାହୃତ ବଣିକେ ସାହା ହୁଅ ଗୋସାମଣୀ ।

(ଦୃଶ୍ୟ ପରିବର୍ତ୍ତନ)

---

# —ସପ୍ତଦଶ—

(କଳ୍ପ-ପ୍ରାଣ ପ୍ରବେଶ କଲେ)

କଳ୍ପ-ପ୍ରାଣ—

କଳିଙ୍ଗ ବୋଇତଅଳେ
ବହୁ ସଙ୍ଗେ,
କଳିଙ୍ଗ କଳା, ସଂସ୍କୃତି, କଳିଙ୍ଗ ସଭ୍ୟତା,
ବାଣିଜ୍ୟ ସମ୍ଭାର ତୁଲେ ବାଣ୍ଟିଲେ ବିଦେଶେ ।

ଉଡାଇ ଚହ୍ଲ ଫରହର
ଉତ୍ତାଳ ତରଙ୍ଗ ଲଙ୍ଘି,
ନାଚି ନାଚି ଚଳିଲା ବୋଇତ
ଥମି ଥମି ପୋତାଶ୍ରୟ ସ୍ଥଳେ ।
କାଳ ଗର୍ଭେ ଥାପି କାଳ-କଥା
ସ୍ୱାଧୀନ କଳିଙ୍ଗ ସୁତେ
ବିରଚିଲେ କେତେ ଦୁର୍ଗ ଗ୍ରାମ ଜନପଦ;
ଦୂର ପୂର୍ବ ଦ୍ୱୀପପୁଞ୍ଜେ ।
ଧନେ ଅଷ୍ଟମ ଶତାବ୍ଦୀ ମୂଳେ
କଳିଙ୍ଗର ଶୈଳେନ୍ଦ୍ର ବଂଶଜେ ଯଥା
ଗମି ଯବ ଦ୍ୱୀପେ,
ସ୍ୱର୍ଣ୍ଣାକ୍ଷରେ ରଚିଲେ କୀରତି—
ବାର୍ବଦୁରେ, ଚଣ୍ଡି କଳସରେ
ଅମର ସ୍ମୃତିର ସ୍ତମ୍ଭ;—
ଅପାଶୋର ଯାହା ଧରାବକ୍ଷେ
ଯାବତ ଜାଗ୍ରତ ନଭେ ରବି, ଶଶି ତାରା ।
ସେହୁ ଜାତି, ସେହୁ ଦେଶ
ଯେ ରାଜ୍ୟ ଥାପିଲା ଏବେ ଭାରତ ବକ୍ଷରେ

ମହା ମହା ବୀରେ ତାହା
ପାରି ତ ନାହାନ୍ତି କଲି ସ୍ୱପନରେ ହେଲେ ।
କିନ୍ତୁ, ଏ କି ହେଲ ?
ଏ କି ହେଲା ଯେ ଜାତିର ସତେ ?
ଲେଖନୀ ଯେ ମୂକ ।
ନାହିଁ ଇତିହାସ ବକ୍ଷେ ଲିପି ସ୍ମୃତି ଗିରି ।
କେ କହିବ ଭବିଷ୍ୟରେ
ହାତୀ ଗୁମ୍ଫା ପ୍ରସ୍ତର ଲଗନ ଭିନ୍ନ—
କି ହୋଇଛି, କି ହୋଇଲା
ମହାମେଘ ବାହନ ଯେ ଖରବଳଙ୍କର—
ଶେଷ ପରିଣତି ?
ନା, ନା—ଅନ୍ତରିତ କାଳର ବିଳମ୍ବ ଅତି ।
ଉପଯୁକ୍ତ ପାତ୍ରେ ଦେବ
ଲିଖନ ପ୍ରେରଣା ।
କଳ୍ପକଥା ଜଳ୍ପି ଲଭ ନାହିଁ ।
କଳ୍ପନା ବୋଲି କଳ୍ପଣା କରିବେ ବଂଶଜେ ।
ଦେବ ! କଳିଙ୍ଗ କମଳା ।
ସହାୟ ହୁଅ ମା—
ଦିଅ ଗୋ ବିଶ୍ରାମ ମୋତେ
ଦେଖାଅ ମା ଲିପିକାରେ
ଲେଖନୀ ମୁନରେ ଯାର
ତାର ହେବ କଳିଙ୍ଗ ପଞ୍ଜିକା ।

(ଦୃଶ୍ୟ ପରିବର୍ତ୍ତନ)

## —ଅଷ୍ଟାଦଶ—

ଦୃଶ୍ୟ:—(ଘରଭିତର । ଖଣ୍ଡିଏ ଖଟ ଉପରେ ଶୋଇଛନ୍ତି ପାଞ୍ଜିଆ । ଭୋର ହୋଇ ଆସୁଛି । ଅଦୂର ନେପଥ୍ୟରୁ ଶୁଭୁଛି ପକ୍ଷୀ କଳରବ । ଦୂରରୁ ଦେବ ମନ୍ଦିରର ପ୍ରଭାତ ଅବକାଶ ଘଣ୍ଟି, ଘଣ୍ଟାର ଅର୍ଦ୍ଧସ୍ପଷ୍ଟ ନିନାଦ ଭାସି ଆସୁଛି । ଅବସରରେ ନାଦନାମ କ୍ଷୀପ୍ସା କମ୍ପା ଶାବସ୍ରି ରାଗର ବିଳମ୍ବିତ ଲୟର ସ୍ୱରାଳାପ ଶୁଣା ଯାଉଥାଏ । କିଛିକାଳ ପରେ ପ୍ରବେଶ କଲେ କଳ୍ପ-ପ୍ରାଣ—ଅତି ଧୀରେ)

କଳ୍ପ-ପ୍ରାଣ—(ପକ୍ଷୀରବ ଇତ୍ୟାଦି ପ୍ରଭାତ ସୂଚନା ପାଇ ପୂର୍ବଦିଗକୁ ଚାହିଁ—ଉଷାଙ୍କୁ ଲକ୍ଷ୍ୟକରି)

ବନ୍ଦେ ମାତ,
ବନ୍ଦେମାତ ଆଜ ମଠକର
ନଯାଅ ଗୋ ଗୃଲ୍ ଉଷା ରାଣୀ !
ଆଜଠାରୁ—
ଏହି ଶୁଭ ମୁହୂର୍ତ୍ତରୁ
କଳିଙ୍ଗ ଭୂଦେଶ;—
ଯାହା ଦିନେ ଉତ୍କଳ ନାମରେ
ଲଭିବ ପ୍ରସିଦ୍ଧି;—
ହେବ ତାର ପଞ୍ଜିକା ଲିଖନ ।
ଭବିଷ୍ୟର ଇତିହାସେ ବୋଲାଇବ 'ମାଦଳା ପଞ୍ଜିକା' ।
କ୍ଷଣମାତ୍ର ବିଳମ୍ବ କର ଗୋ ଦେବ,

ତେଜିବାକୁ ଧର୍ମ
ଯେନ କିବେଦନ ।

(ଧୀରେ ଧୀରେ ପାଞ୍ଜିଆଙ୍କ ପାଖକୁ ଯାଇ ଅପାଦ ମସ୍ତକରେ ଦୂରରୁ ଅଶୀର୍ବାଦ ସହ ଶକ୍ତି-ସଞ୍ଚାର ସୂଚକ କର ସଞ୍ଚାଳନ କଲେ ।)

ତୁମେ,—
ତୁମେ ହେବ ଆଜଠାରୁ
ପବିତ୍ର ଭୂମିର ପାଞ୍ଜିକାର ।
ସୁଖ ଦୁଃଖ, ଭଲ ମନ୍ଦ, ଘଟଣା ସଂହତ
ଆଜଠାରୁ କର ଲିପିବଦ୍ଧ;—
ଇତିହାସ ରୂପେ ତାହା ପଢ଼ିବ ଭବିଷ୍ୟ ।
ତୁମ୍ଭ କରେ ନ୍ୟସ୍ତ କରି ଏହି ଗୁରୁ ଭାର
ନେଉଛି ବିଦାୟ ।
ଅନ୍ତ ମୋର କର୍ମକାଳ ଏବେ
ମନାସେଁ ବିଶ୍ରାମ ।
ହୁଅ କୃତକାର୍ଯ୍ୟ ବତ୍ସ !
ଅଶୀଷେ ମୋହୋର ଲେଖ ମାଦଳା ପଞ୍ଜିକା;—
ଦେଇ ଶକ୍ତି । (ଅଶୀର୍ବାଦ କରି ଧୀରେ ପ୍ରସ୍ଥାନ କଲେ ।)

(ବିପରୀତ ଦିଗରୁ ପ୍ରବେଶ କଲେ ପାଞ୍ଜିଆଙ୍କ ଗୃହିଣୀ । ହାତରେ ତାଙ୍କର ପାଣି ଗାଲ । ଦେଖିଲେ ପାଞ୍ଜିଆ ଶୋଇଛନ୍ତି ।)

ଗୃହିଣୀ—ଅଜ୍ଜ ତ କଅଣ ଏତେ ବେଳ ଯାଏ କାହିଁକି······
(ଦେହରେ ହାତ ମାରି ଉଠାଇ)

ତେବେଣେ ମଙ୍ଗଳ .ଅଲତା ବେଲ ଗଡ଼ ଧାଉଁଛ ପଣ !
ଦର୍ଶନକୁ ଯିବ ନାହିଁ କି ? ଦେହ କଅଣ ସୁସ୍ଥ ନାହିଁ ? ଏଁ ?
ଉଠ ।

ପାଞ୍ଚିଅ—(ଚମକି) କିଏ ?
ତୁମେ ?
ତୁମେ ଶକ୍ତି ?

ଗୃହିଣୀ—ମୁଁ ? କଅଣ କହୁଚ ମ ?

ପାଞ୍ଚିଅ—(ଉଠି ପଡ଼—ନିରୀକ୍ଷଣ କରି ଆପାଦ ମସ୍ତକ)
ତୁମେ—

ଗୃହିଣୀ—କଅଣ ଚିହ୍ନି ପାରୁ ନାହଁ ? ନା—ଆଖିରୁ ନିଦ ଛାଡ଼ି
ନାହିଁ ମ । ରାତି ପାହା ପାହା ହେଲଣି । କଅଣ ସପନ ଦେଖୁ
ଥିଲ କି ?

ପାଞ୍ଚିଅ—ଏଁ ? ସ୍ୱପ୍ନ ! (ଭାବିତ ହୋଇ) ନାହିଁ ତ । ସ୍ୱପ୍ନ ନୁହେଁ ।
ସତ୍ୟ ! ଏହି ତ ସେ ଥିଲେ । ତେବେ କଅଣ........

ଗୃହିଣୀ—ନେଲ, ପାଣି ନେଇ ଆଗେ ମୁହଁ ଧୋଇ ଆସିଲ । ନିଦ
ଛାଡ଼ିଲେ ସବୁ ହେଜ୍ଜୁ ପଡ଼ିଯିବ । ଉଠିବଟି । (ହାତ ଧରି
ଉଠାଇଲେ) ନିଅ—(ପାଣି ଢାଳ ଦେଇ) ଉଠ । ଯାଅ ।

ପାଞ୍ଚିଅ—ହଁ ଯିବି । କିନ୍ତୁ ଯିବା ପୂର୍ବରୁ ତୁମେ କହ ଦେଖି—
କିଏ ସେ ଆସିଥିଲେ ? କିଏ ସେ ଜଣକ ।

ଗୃହିଣୀ—ତୁମେ ମୁହଁ ଧୋଇ ଆସିବଟି ଆଗେ । କଅଣ ଗୋଟେ
ଅସାର ସପନ ଦେଖି......କହୁଚଟି ଦୁର୍ଗା, ଦୁର୍ଗା ।

ପାଞ୍ଚିଅ—ହଁ, ହଁ, ଦୁର୍ଗା, ଦୁର୍ଗା—ଶକ୍ତିମୟୀ ଦୁର୍ଗା ।

ଗୃହିଣୀ—ଯା, ଯା, ମୁହଁ ଧୋଇ ଆସ ଆଗ । (ପାଞ୍ଜିଆ ଚାଲି ନେଇ ଗଲେ । ଗୃହିଣୀ ବିଛଣା ଉଠାଇବାରେ ଲାଗିଲେ । ପାଞ୍ଜିଆ ଫେରି ଆସିଲେ ଶାଲ ହାତରେ)

ଗୃହିଣୀ—କି ସପନ ଦେଖିଲ ତୁମେ ?

ପାଞ୍ଜିଆ—ସ୍ୱପ୍ନ ! ସ୍ୱପ୍ନ ତ ନୁହେଁ ସେ !
ସାକ୍ଷାତରେ ଦେଖିଛି ମୁଁ
ଆଶିର୍ବାଦ କରି ଗଲେ ମୋତେ ।

ଗୃହିଣୀ—କିଏ ସେ ଦେବ ନା ଦେବୀ ?

ପାଞ୍ଜିଆ—(ଟିକିଏ ଭାବି) ନା, ନା, ଋଷି,—ତପସ୍ୱୀ ସେ—ଆଛା ତୁମେ ଗଲ—ଅଲେଖା ଖୋଜା ଆମର ଥିଲା ପରା ?

ଗୃହିଣୀ—ଏତେବେଳେ କି ଖୋଜା ଖୋଜା ପଡ଼ିଲା ମ ? ମଙ୍ଗଳ-ଆଳତି ଦର୍ଶନକୁ ଯିବ ନାହିଁ କି ?

ପାଞ୍ଜିଆ—ଯିବ, ଯିବ । ତୁମେ ଟିକିଏ ଖୋଜା ଆଉ ମୋ ଲେଖନୀଟା ଆଗ ଆଣିଦବଟି ।

(ଗୃହିଣୀ ଚାହିଁ ରହିଲେ)

ଯାଅ, ଟିକିଏ । (ଗୃହିଣୀ ଚାଲିଗଲେ)

ପାଞ୍ଜିଆ—ସ୍ୱପ୍ନ !
ଏ କଅଣ ସ୍ୱପ୍ନ !
ସ୍ୱପ୍ନାଦେଶ ହେଲା !
ତେବେ କିଏ ସେ ଆଦେଶ-କର୍ତ୍ତା !
ଗୌର କାନ୍ତି !
ଋଷି ବା ସନ୍ନ୍ୟାସୀ ହେବେ କେହି !

---

ପ୍ରସନ୍ନ ମୁଖ ମଣ୍ଡଳ
ପ୍ରଫୁଲ୍ଲ ଅରୁଣ ସଦୃଶ ଅସେ ଫୁଟି ଫୁଟି ।
ଆଶୀର୍ବାଦ କରଗଲେ ମୋତେ ।
ଦେଲେ ସେ ନିର୍ଦ୍ଦେଶ—
(ଗୃହିଣୀ ପୋଥି ଲେଖନ ଘେନି ଆସିଲେ)

ଗୃହିଣୀ—କିଏ ମ ସେ ? କାହାକୁ ଦେଖିଲ ? କାହା କଥା
କହୁଚ ! ଭଲ ସପନ ଦେଖିଲ ତ !

ପାଞ୍ଜିଆ—ନା, ନା, ସ୍ୱପ୍ନ ନୁହେଁ ଦେବେ—
ସତ୍ୟ—ପ୍ରତ୍ୟକ୍ଷେ ଦେଖିଲିଃ—
ସୁବଳିତ ବପୁ,
ସାରା ଅଙ୍ଗେ ଝଲକୁଛି ବ୍ରହ୍ମତେଜ ଶିଖା ।
ସମୁଜ୍ଜ୍ୱଳ ବଦନ ମଣ୍ଡଳେ
ଖେଳୁଥିଲା ଦିବ୍ୟ ପ୍ରସନ୍ନତା !
ଆଶୀର୍ବାଦ କଲେ ଅସି ମୋତେ,
ଦେଲେ ସେ ନିର୍ଦ୍ଦେଶ :—
ଆଜଠାରୁ ଲେଖିବାକୁ
ଏ ଦେଶର ଇତିହାସ ଯେତେ
ମାଦଳା-ପାଞ୍ଜି ନାମରେ ହେବ ସେ ପ୍ରଖ୍ୟାତ !
ଦେଲେ ଶକ୍ତି ମୋତେ !
ଦିଅ, ଦିଅ,
ଦିଅ ଖେଜା, ଦିଅ ମୋ ଲେଖଣୀ
ସ୍ୱପ୍ନାଦେଶ—ମିଥ୍ୟା ନୁହେଁ—ସତ୍ୟ—

(ଖେଜା ଲେଖନୀ ନେଇ ଖେଜା ଫିଟାଇଲେ । ଖଟରେ ବସିଲେ)

**ଅଜଠାରୁ—**

ଏହି ମୁହୂର୍ତ୍ତିରୁ

ଅନକୂଳ କରିବ ମୁଁ ଲେଖା

ଅଦେଶ ଦେ ସ୍ୱପ୍ନ ଦେବତାର ।

(ଲେଖିବସିଲେ)

ଶ୍ରୀ ଶୁଭମସ୍ତୁ, ଶ୍ରୀ ଶୁଭମସ୍ତୁ, ଶ୍ରୀ ଶୁଭମସ୍ତୁ—

(ପାଞ୍ଜିଅ କହୁ କହୁ ଲେଖଣୀକୁ ମଥାରେ ଛୁଆଇଁଲେ)

ଗୃହିଣୀ—ଶ୍ରୀ ଶୁଭମସ୍ତୁ (ଦୁଇହାତ ମଥାରେ ଲଗାଇଲେ)

(ଚତୁର୍ଦ୍ଦିଗରୁ ଶୁଭନ୍ନା)—ଶ୍ରୀ ଶୁଭମସ୍ତୁ ।

('ଶ୍ରୀ ଶୁଭମସ୍ତୁ' ଉଚ୍ଚାରଣ ମଧ୍ୟରେ ଯବନିକା ପତନ)



Printed by Sri Manmatha Mohan Das,
at Paramarthi Printing Works, Cuttack.